# ହଜଲା କଥାନି

**ସଂତୋଷ କୁମାର ରଥ**
ହିଲ ଭିଉ, ପେଲେସ ଲାଇନ
ବଲାଙ୍ଗିର - ୭୬୭୦୦୧


ପ୍ରକାଶକ - ଅନୁରାଗ ପ୍ରକାଶନ, ବଲାଙ୍ଗିର
ମୁଦ୍ରଣ - ଜୟଶ୍ରୀ ପ୍ରିଣ୍ଟର୍ସ, ବଲାଙ୍ଗିର
ମୁଲ୍ୟ - ଟ.୧୨୦/

**HAJLA KATHANI**

( A collection twelve Stories )

**Santosh Kumar Ratha**
Hill View , Palaceline
Balangir-767001.


Publishor - Anurag Prakashan, Balangir.
Printed at : Jayashree Printers, Balangir.
Price : Rs. 120/

ଓହଡହ ଖରା ଆର ଅଁଗରାର ମଝି ରହି
ତାପି ତପ କରି,
ହାତ ଟେକି ହାତ ଜୁଡି
ଜେନ ମନେ ଦେଇଛନ ଆଏସ ଆହୁତି,
ମା'ର ଲାଗି  ମାଟିର ଲାଗି
ହଁସି ହଁସି ଛାତି ଡେରି ମରନର ମୁହେଁ
ଅରଜିଛନ ଜେନ ମନେ କଥାର ବିଭୁତି ।

ଇତିହାସର କୁହୁ ଅଁଧାରର ଧାରେ
ଜୁଲ ଜୁଲ ଜୁଏ ହୁଲା ହେଇ
ଜେନ ମନେ ଜାଲିଛନ ଅଁତରା,
ନିଜେ ଜାଲି ନିଜେ ଜଲି
ମୁନୁସର ଲାଗି,
ମାଜି ସାଜି ଇତିହାସର ଖାର ଝାରି
ଅମରନ ହେ ମନକର କଥା,
ଆଝିର ଫେର ଲେଖା ହଉ,
ଆଝିର ଫେର ଲେଖା ହଉ
ଆସୁଥିବା ମୁନୁସର ଲାଗି ।



ଇ କଥାନି ସବୁ ବାହରି ଥିଲା ,
ଭରନି, କଥାନି,ନବନୀତା,
ନୁଆଁ ସକାଲ, ଜୁଗାର,
ନୀଲକଇଁ (ଓଡିଆ)
ଆର
Indian Literature ଥି
ଭିନ ଭିନ ସମିଆ ନେ ।

ସବୁ ସଂପାଦକ ଆର ପାଠକମାନକେ
ଆଏଜ ସୋର ପକଉଛେଁ ।
ତାଁକର ଗହଗହ କେତେ ପଦ କଥା
ମତେ ଆର ଆର ଲେଖବାକେ,
ଆର ପ୍ରକାସ କରବାକେ ସାହାସ ଦେଲା ।
ସମକୁ ଜୁହାର ।

# ହଜଲା କଥାନି





# ଲିଭିଥିବାର ଉକିଆ ଆର ଜୁଲଜୁଲିଆ ପୋକର କଥା

ଇ ସବୁ କଥା ଇଡି ହେଇ ଜାଇଥିତା ସମିଆର ଅନଁତ ଧାରେ । ମଝି ଧାରେ ଠିଆ ହେଇ ଉଁଜଲେ ପାଏନ ଧରି କରି ପାଠକକେ 'ଇଟା ଦେଖ କଥାନି' କହେବାର କାମ ଲେଖକର । ଲେଖକ ନାଇଁ ଜାନି, କେତେ ଗଲି ଗଲା ଆଁଗଲି ସଁଧିନୁ, ନାଇଁ ଧରି ରଖିପାରଲା ସେ, ଫେର ମିଶିଗଲା ଇତିହାସର ଧାରନେ । ଲେଖକ ବି ନାଇ ଜାନି, କେତେ ଦିନତକ ପାଠକ ଲାଗି ଧରି ରଖି ପାରବା ତାର ଇ ଚେସଟା । ହଜାର ହଜାର ବଛରନୁ ଆରମ ହେଇଛେ ଇ ସମିଆର ଧାର , ହଜାର ହଜାର ବଛରତକ ବି ବହିଜିବା ଭବିସତ ଆଡକେ ।

ମଝି ଗୁଟେ ସମିଆନେ, ଗୁଟେ ଠାନନେ ଠିଆ ହେଇଛେ ଲେଖକ, ଟେକି ଧରୁଛେ ଉଁଜଲେ ସମିଆ, କହୁଛେ: 'ଦେଖ ଇ ସମିଆନେ, ଇ ଠାନେ, ଇ ଲୋକ ମନେ ଥିଲେ, ଅନାହତ ସମିଆକେ ତାଁକର ଖୁଜୁର ବୁଜୁରୁନେ ଟିକେ ଥରେଇ ଦେଇଥିଲେ । ନାଇଁ ନାଇଁ ଥରେଇ ନାଇ ପାରି, ହଲେଇ ନାଇ ପାରି, ବଦଲେଇ ନାଇ ପାରି, ଖାଲି ଭାବୁଥିଲେ ହେନତା କରିଛୁଁ ବଲି, ମିଛେ ମିଛେ ।'

ହେ ଲୋକ ମନକୁ, ସେ ସମିଆକେ, ସେ ଠାନକେ କାଁଏ ହେଲା ଜେ ଲେଖକକେ ଲାଗିଛେ , ଇଟା ଏକା ଇତିହାସନେ ଅମର ହେବାର କଥା । କିହେ ନାଇ ଜାନି, ଲେଖକ ବି ନାଇ ଜାନି । ଅମର ହେବାର କଥା ଇଥିର ଲାଗି ନାଇଁସେ ଜେ ହେମନେ ମହାନ, ହେମନେ ଇତିହାସର ମଁଜି । ଇଥିର ଲାଗି ନାଇଁସେ ଜେ ଇନେ ନ  ସେଟା ଥରେ ନ ଘଟିଛେ, କେଭେ ନାଇ ଘଟି କି କେଭେ ନାଇଁ ଘଟେ । ଘଟନାକେ ନେଇ କରି ମୁନୁସର ଇ ଅନୁଭବ ସବୁ, ଇ ଗ୍ୟାନ, ଇ ଚିନହା ବନା, ଇ ସମିଆର ଏକା, ଆର ଥରେ ନାଇ ଫିରେ ଗୁଟେ ମୁଟେ । ସମିଆନେ ହଜିଜିବାର ଇ ଡର ତ ଲେଖକକେ ବି ଘାରିଛେ, ତାର ସାଁଗେ ଘାରିଛେ, ଇ ମନକର କଥା ଏକା ସେ ନାଇ କହେଲେ, ମୁନୁସ ଜାତିର ଇତିହାସନୁ ହଜିଜିବା ଇ ସମିଆ, ଇ ସମିଆର କଥା । ମୁଇଁ ଜେନ ଭାବେ ଦେଖିଛେଁ, ମୋର ସପନର ଆଖି, ମୁଇଁ ଜେନଟା ଭୁଗିଛେ ମୋର ମନେ, ମୋର ଦିହେ, ସମିଆର ଆଗକେ ପଛକେ ଦେଖିକରି ଜାହା ଠଉରେଇଛେ କିହେ, କେଭେ, କେନେ ଆରୁ ନାଇ ଜାନି ପାରନ । ହେଥିର ଲାଗି ଇ ଟା ଲେଖି ରଖବାର କଥା ।

ମୋର ବି ହେ ଅନୁଭବ ହେଇଛେ, 'ହଜଲା କଥାନି 'ଲେଖଲା ବେଲେ, ଇ କଥାନି ସବୁ ହଜି ଜିବା, ଜଦି ମୁଇଁ ନାଇ ଲେଖମି । ଜେନ ମନକୁ ମୁଇଁ ଭେଟିଛେ ଜିବନନେ, ସପନନେ, କଲପନାନେ, ସଁଭାବନାନେ , ସେମନକୁ ଆରୁ କିହେ କେଭେ ନାଇ ଭେଟି ପାରନ ।

ଜଦି ଆରୁ କିଏ ସେମନକୁ ଭେଟବା, ସେମନେ ସେ ଲୋକ ନାଇଁଥନ, ମୋର ବିଚାର ଆର କଲପନା ଜେନ ଲୋକଟେ ଆର କଥାଟେ ଗଢିଛେ, ମୋର ସାଁଗେ ନ ମୋର ପାଖେନ ଥିବେ ସବୁଦିନେ, ନାଇଁ ଲେଖଲା ତକ । ସେମନକୁ ଆର କିଏ ପାଏବା କେନେ, ଭେଟବା କେନତା କରି ? ହେତିର ଲାଗି ମତେ ଲାଗଲା, ଇ କଥାନି ସବୁ ହଜି ଜାଇଥିତା ମୁଇଁ ନାଇଁ ଲେଖିଥିଲେ ସବୁଦିନର ଲାଗି ।

ଇ ସବୁ କଥାକେ ଲେଖଲା ବେଲକେ, ସେମନଁକର ସାଁଗେ ଆସିଛନ ଇତିହାସର କେତେ ଝନ ଜନାସୁନା ଲୋକ, ଅତିତର ଚିନହାଁ ଚିନହାଁ ଘଟନା, ଇ ମାଟିର କେତେ ଠାନ । ସଭେ ମେସି କରି ଗଢିଛନ କଥାନି । କାହା କାହାକେ ଲାଗବା, ଇ ସବୁ ସତ କଥା, ଆମର କଥା, ମୋର କଥା ।

ଆମର ସମିଆ ଆର ଠାନକେ ନେଇ କରି ଇ କଥାନି । ଲିଭି ଲିଭି ଆସୁଥବା ଉକିଆନେ, ମୁହଁ ମୁହଁ ଅଁଧାର ଭିତରେ, ଆମେ ଭେଟ ହେଲାଁ ଲେଖକ ଆର ପାଠକ । ଦେଖଲାଁ, ଆମର ଆଘେ ଗୁରଦୁଟେ ଜୁଲ ଜୁଲିଆପୋକ । ଜଲୁଛେ ଆର ଲିଭୁଛେ , ଜଲୁଛେ ଆର ଲିଭୁଛେ ସେମନଁକର ଉକିଆ । କେତେ ବେଲେ ଆଁଖର ଆଘେ କେତେବେଲେ କାହିଁ ଧୁରେ । 'କେନେ ଥିଲେ ଇ ମନେ ଦିନସାରା ?'– ପଚରାଲା ଲେଖକ । ଆପଣ କାଣା କହେବେ, 'ସତେ ତ କେନେ ଥିଲେ, ଇ ମନେ । ଥିଲେ ତ ନିସଚେ, ଲୁକି ନାଇ ଥାଇ । ହେଲେ ଅଁଧାର ନାଇ ଥାଇ ବଲି, ଆମେ ନାଇ ଦେଖି ଥାଇ ?'

ମାଟିର ଧୁଇଲ ହେଇ, ପବନର ଗୁଁଡ ହେଇ ଉଡୁଥିବାର ଇ କଥା ସବୁ ବି ହେନତା, ଥିଲେ ଜେ, ଆମେ ନାଇଁ ଦେଖି ପାରୁଥାଇ, ତାର ଉକିଆ । ଆରୁ ଜହ ଗୁଟେ ଉକିଆ ଆମକୁ ଅଁଧା କରି ରଖିଥିଲା କି ଆମର ଅଛେ ଦୁରସଟି ଦୋସ, ସେଟା ଆର ଗୁଟେ କଥା ।

*******

'ହଜଲା କଥାନି' ବଲାଁଗେର ପାଟନାର ଇତିହାସ, ଦୁଇସ ବଛରର । ଇ ଇତିହାସ ରଜା ମନକଁର ନାଇସେ, ଆର ହଁ ସେ । ଇ ସାଧାରନ ଲୋକ, ଜାର କଥା ଇନେ ଆଏଜ ନାଇ ଲେଖିଥଲେ, ଆର କିହେ କେଭେ ବି ନାଇଁ ଲେଖିଥିତେ, ହଜି ଜଉଥିଲା, ହଜି ଜାଇଥିତା ବଲି ଲେଖା ଜାଇଛେ । ପାଟନା ଇତିହାସ ଇନୁ ଆର ପୁରନା ଆର ବ୍ୟାପକ । ଆର

ଗୁରଦୁ କଥା ଇନେ ଅଛେ, ସେଟା ବି ଲେଖା ଜାଇ ପାରବା, ଉନଜା ଲୋକ ଲେଖବେ, ଉନଜା ଠାନେ ନାଇ ହେଲେ, ଆର କେଭେ ।

ଇଟା ବି ସତ ଜେ ସବୁ ଇତିହାସ ଲେଖକ ନିଜର ସୁବିଧା ଆର ବିଚାରକେ ନେଇ କରି ଗଢସନ କଲପନା । ତାର ଅନସାରେ ଲେଖସନ ନିଜର ଇତିହାସ । ଇତିହାସ ନେ ସତରଧାରା ବଲି କିଛି ନାଇ, ସବୁ ଲେଖକ ମିସଉଥିସନ ଉଁଜଲେ ଉଁଜଲେ ନିଜର ଧୁଇଲ ।

ଇ କଥାନି ଲେଖକ ବି ଝନେ ସେନତା ଇତିହାସ ଲେଖକ, ଜେ କଲପନାନେ ବନେଇଛେ ଘଟନା, ତାହାକେ ଜୁରିଛେ ଇତିହାସ ସାଁଗେ, ଇତିହାସ ସମିଆର ଘଟନା ଆର ବାସତବତା ବି ଆସିଛେ ତାର ସାଁଗେ । ଇନେ ଲୋକ ମନେ ସତ ନାଇଁ ହେଇ ପାରନ, ଠାନ ବି ସତ ନାଇ ହେଇ ପାରେ, ହେଲେ କଥାଟା ପୁରାପୁରି ସତ । ( ହେନତା ତ କେତେଟା ଜନା ସୁନା ସତ କଥାକେ ଆଧାର କରି ବି ଲେଖା ହେଇଛେ କେତେଟା କଥାନି । ଜଗତନେ କଥାନି ଏକା ସତ । ସତ କଥା ବି ଜଦି ନାଇ ଲେଖା ହେବା, ସମିଆର ଧୁଇଲ ମଏଲଥି ଢାପି ହେଇ ମିଛ ହେଇ ଜିବା ପଛେ ପଛେ । ହେଥିର ଲାଗି କଥାନି ଏକା ସତ ।)

ଇ ଲୋକମନେ ଇନେ ଥିଲେ କି ନାଇ ସେଟା ବଡ କଥା ନାଇଁସେ, ବଡ କଥା ହଉଛେ ଇ ମନେ ଇନେ ଥିବାର ସଁଭାବନା ଅଛେ । ଜେନ କାମ କରଛନ, ଜେନ କଥା କହିଛନ, ଜାହା ଜାହାକେ ଭେଟିଛନ, ଜାହା ଜାହା ଘଟିଛେ ସବୁ ହେବାର ସଁଭାବନା ଥିଲା । ସଁଭାବନା ଥିଲା ବଲି ଇ ମନେ ସତ, ଇଟା ସଁଭାବନାର ଇତିହାସ, ଇ ମନେ ସଁଭାବନାର ଚରିତ୍ର ।

ଇଟା ସମିଆର ପ୍ରତିକୁଲନେ ଜାତରା, ସମିଆର ପଛକେ ପଛକେ ଆମେ ଫିରି ଫିରି ଜିମା । ଆଏଜ ଠାନୁ ଗଲା ଦୁଇଶ ବଛର ହେଲା, ଇ କଥାନିନୁ ଆର ବଡ ବଡ କଥା ଘଟିଛେ, ଘଟିଥିବାର ଆମେ ବି ଜାନିଛୁଁ । ମତେ ଲାଗୁଛେ ଇ ସମିଆର ନାଡି ଚିପଲେ ଇ କଥା ଆରୁ ଆରୁ ଜନା ପଡବା । ଇଂରେଜ ସାସନେ ନାଇ ରହି ପାଟନା କେଭେ ବି ।( ଘାଏ ଘାଏ ଲାଗିସି ରହିଥଲେ ବନେ ହେଇଥିତା କି କାଣା ?) କୋଟ ଅଫ ଉଆଡ ହେଇ କରି ରହିଛେ ଦୁଇଥର, ୧୮୭୧ ନୁ ୧୮୯୩ ଆର ୧୯୨୪ ନୁ ୧୯୩୨ । ଦୁଇଥର ମିସି କରି ତିରିସ ବଛର । ସାସକ ନାଇ ବଲି ସୋସଣର ରୁପ ବଦଲିଛେ । ବଦଲିଛେ ସହେବାର ସିମା, ବଦଲିଛେ ବିରୋଧର ତରିକା । ଦେସ ସୁଆଧିନ ହେଲା, ଆମେ ବି ସୁଆଧିନ ହେଲାଁ ହେ ସାଁଗେ, ଆମର ଅଜାନତେ । ଭୋଟ ରାଜନିତିନେ ଆମେ ରହିଗଲାଁ ବିରୋଧି ହେଇକରି । ସେସ ରାଜାର ଗୁନ ଗାଇ ଗାଇ, ଜାର ସାଁଗେ ରହେଲାଁ ତାର ବିରୋଧ କରି କରି, ଆମେ ହେଇ ଗଲାଁ ସତ୍ତା ବିରୋଧି । କ୍ଷମତାର କେନଦରନେ ଜିଏ ରହେଲେ ଜେତେବେଲେ, ତାର ବିରୋଧନେ ଆମର ବିତିଗଲାନ ଏତକି ବରସ । କ୍ଷମତା ଜେଭେ

ଆସିଛେ ଆମର ହାତକେ, ଅଲଗା ମନକୁ ବୁଝି ବୁଝେଇ ଗଡି ଜାଇଛେ ସମିଆ ।

ବଲାଁଗେର ପାଟଣାର ଇତିହାସ ଅଜବ ଗୁଟେ ବିରୋଧ ଆରୁ ବୁଝାମଣାର ଇତିହାସ । ଇନେ ସୁଆଧିନତାର  ଲାଗି ବ୍ୟାପକ ଜନ ଆଁଦୋଲନ ନାଇ ହେଇ, ଇତାର ଅରଥ ନାଇ ସେ ଲୁକର ସୁଆଦଧିନ ହେବାର ଇଚ୍ଛା ନାଇ ଥାଇ । ଇନେ ଲୋକ ମିଲି ମିସି କରି ସହମତିନେ କିଛି କରି ନାଇ ସିଖି, ଜେ ଜାର ଭାବେ ସାସନକେ ପ୍ରତିବାଦ କିରିଛନ । ବ୍ୟବସ୍ଥାକେ ଏକଲାର ପ୍ରତିବାଦ ଘାଏ ଘାଏ ବଡା ଗୁଲଗୁଲିଆ ଦିସସି, ଆର ଘାଏ ଘାଏ ଦେଖି ନାଇ ହୁଏ ତାର ଭଏଁକର ରୁପ । କେଭେ କେଭେ ବଦଲିଛେ ବ୍ୟବସ୍ଥା, ଜହଥର ବଦଲିଛନ ଲୋକ ହାରି ଜାଇ କରି ।

ଇ କଥାନି ମନକୁ ମାଏଟ ଆର ମୁନୁସର ଭାବର କଥା କୁହାହେଇଛେ ଇନେ ସେନେ । ସବୁ ଆଡୁ ଲୋକ ଆସିଛନ ଭିନ ଭିନ ସମିଆନେ ଭିନ ଭିନ ରୁପେ । ରହି ଜାଇଛନ, ଭାଗି ଜାଇଛନ, ମରି ଜାଇଛନ, ହଜି ଜାଇଛନ । ମିସି ଜାଇଛନ ଇନର ସଁସକୁରତି ଧାରା ସାଁଗେ, ବଦଲେଇ ନାଇ ପାରି ନିଜେ ବଦଲି ଜାଇଛନ । ହେ ମନେ ସଭେ ଇନର ଇ ମାଟିର, ଇ ସମାଜ, ଇ ସଁସକୁରତିର ।

କିହେ ଆର ବାହାରର ନାଇସେ, ଜେ ରହି ଗଲା ସେ ଇନର, ଜେ ଭାଗିଗଲା ସେ ସେନର । ମୁନୁସ ମାଟିର କିରହା, ମାଏଟନେ ତିଆରି ଆର ମିସବା ମାଏଟନେ  । ଜେତେ ଦିନ ଅଛେ ଜେନେ, ଜେନ ମାଏଟକେ ମା ବଲୁଛେ, ଇଟା ମୋର ସେଟା ତାର । ମାଏଟ ମାଁ ଖେଦି ନାଇ ଦିଏ କାହାକେ କେନୁ, ତାହାକେ ଆମର ଭାବଲେ ହେଲା । ଜିବନେ ଚାଲଲା ବେଲକେ କେନ ଠାନ ଖାଲ ଢିପ ଲାଗବା, ସବୁ ଠାନ ସମାନ ନାଇଁ ଲାଗେ, ହେଥି ଲାଗି ଆମେ କାଣା , ମାଏଟ ଛାଡି କରି ଜାଇ ପାରମା ଇନୁ ଆର କେନକେ ? କେନେ ଅଛେ ଖାଲି ସମାନ ସମତଲ ମାଏଟ, ଇ ପୁରଥିବିର ବାହାରେ ?

ହେଲେ,  ଛୁଆବେଲେ ସୁନିଥିବାର ଗୁଟେ କଥାନି ମୋର ଘାଏ ଘାଏ ସୋର ପଡସି ।

‘ଗାଁ ନୁ ପରଜାଟେ ଆଏଲେ କଚରିକେ, ପେସକାରକେ ଦଉଥିଲା ପଏସାଟେ । ପେସକାର କହି ଦଉଥଲା, ତାର ଆଏବାର ତାରିଖ କି କରି ଦଉଥିଲା ଟିକେ ବଲି କେନ କେନ କାମ । ସରକାର ଘରେ ପରଜାର ଏତକି କାମ ନାଇ ଥାଇ । ଏତକି ଦେବାର ନାଇ ଥାଇ କି ନେବା ବି ନାଇ ଥାଇ । ଦେସ ସୁଆଧିନ ହେଲା, ସରକାର ସାଁଗେ ବଢଲା ଲୋକର କାମ, ହରଦିନ କାମ ପଡଲା । କଚରିକେ ଆଏଲା, ପରଜା ଦେଖଲା, ରଜାର ଫଟୁ ନାଇଁ , ଅଛେ ଆମର ଗାଁଧି ବୁଢାର ଫଟୁ । ଗାଁଧି ବୁଢା ହାତ ଟେକି କରି ଆସିରବାଦ କରୁଛନ ପରଜାକେ । ପରଜା ପେସକାରକେ ଆଘର ବାଗିର ଦେଲା ପଏସାଟେ । ପେସକାର

କହେଲା: ଦେଖ , ଦେସ ସୁଆଧିନ ହେଲା, ଏତକିରେ ଆଉ ଚଳିବ ନାଇ , ଗାଁଧିଁକର ଫଟୋକୁ ଦେଖ , ସେ ବି କହୁଛନତି ପାଁଚ .., ।' ପରଜା ପାଁଚ ପଏସା ଦେଲା, ପାଁଚ ଅଣା ଦେଲା, ପାଁଚ ଟଁକା ଦେଲା, ପାଁଚ ସହ ଦେଲା, ପାଁଚ ହଜାର ଦେଲା.. ସମିଆ ବଦଲି ବଦଲି ଚାଲଲା ।

ଇ ଟା ଗୁଟେ କଥାନି, ସତ ବି ଆର ମିଛ ବି । ଆମେ ଜେନ ମନେ ସିଖିତ ହେଲାଁ, ଆମର ସଂବିଧାନକେ ଆମର ସାସନକେ, ଆମର ଆଇନକେ, ଆମର ଭାସାକେ, ଆମର ସଂସକୁରତିକେ ସେ ପେସକାରର ବାଗିର ଅର୍ଥ ନାଇ କରବାର କାଏଁ ? ଆମେ ଇ କଥା ଜିଏ ଜାହାକେ ପଚାରି ପାରମା, ସମିଆ ଆର ସୁଜୋଗ ଦେଖି କରି । 'ହଜଲା କଥାନି'ର କଥାନି ସବୁ ବି ହେନତା, ପାଠକର ବିଚାର ଲାଗି, ପାଠକେ ପଚରାବାର ଲାଗି ।

********

ଆମର୍ ଇ ନୁଆ କଥାନି ଜହ ଦିନର ନାଇଁସେ । ଆମର ଥିଲା ବୁଢ଼ିମାର ପିଲା ଭୁରତା କଥାନି, ସାଁଗ ସରସାର ମନଭୁରତା କଥାନି, ଗାଁକେ ଆଉଥିଲେ ଭାଟ, ଘୁଗିଆ, ପରଗନିଆ ମନେ କହୁଥଲେ ଆମର ଜାତିର କଥାନି, କେଭେ କେଭେ କେନୁ କେନୁ ଗାଁକେ ଆଉଥିଲେ କଥାନିକହୁ ମନେ, ହେ ମନେ କହୁଥିଲେ ରଜା, ରାନୀ, ସାଧବବୁଢା, ବେତାଲ, ସୁଆ ସାରିର କଥାନି । ସେଥି ଗିତ ଥିଲା, ବାଦ୍ୟ ଥିଲା, ଜିଇଁଥିବାର ଜିବନ ଥିଲା, ସୁଖ ଥିଲା, ଦୁଖ ବି ଥଲା । ହେଲେ, ନାଇଁ ଥାଇ 'କିଏ, କେଭେ ଆର କେନେ' । କଥାନିକେ ଜିଏ ଜେଭେ ଜେନେ ଆମେ ସୁନୁଥିଲାଁ, ଲାଗୁଥିଲା ଇଟା ଆମର ଏକା କଥା । କହୁଥିବାର ଲୋକ ବି ଆମକୁ କହୁଥିଲେ, ସେ ସେନେ ଥିଲେ, ସେ ବି ଜାଇଥଲେ ରଜା ଘରର ଭୁଜିକେ, କିହେ ନାଇଁ କହେଲେ ବସ ବଲି, ନାଇଁ ପାଏଲେ ଗୁଁଡା ଭାଁଗ ଟିକେ ।

ଆମର କଥାନି ଥିଲା ଦୁର ଜଗତର, ଦୁର ସମିଆର, ଦୁର ଲୁକର । ହେଲେ ଏତକି ବି ଦୁର ନାଇଁ ସେ ଜେ ଆମେ ସେମନେ ନାଇଁ ଚିନହିଁ । ଦୁର ସମିଆର ହେଲେ ବି ଆମର ଜନାସୁନା, ଇ ସମିଆ, ଇ ଲୋକ, ଇ ଠାନ । କଥାନିକେ ଆମେ ଭୁଗୁଥିଲାଁ ବି ଭାବୁଥିଲାଁ ବି । ହେଲେ ନାଇଁ ଚିନହି ପାରୁଥାଇ ସେମନକୁ, ଇ ଜଗତର ଭିଡ ଭିତରେ, ନାଇଁ ଜୁଡିପାରୁଥାଇ ସେମନକୁ ସମିଆର ଧାରଥି । ଆମର ଜିବନର କଥା ସବୁ କଥାନି ହଉଛେ, ଇଟା ଆମେ ଭାବି ନାଇଁ ପାରୁଥାଇ, ଲାଗୁଥଲା କଥାନି ସବୁ ଉହୁଲି ଆସୁଛେ କେନ ଦୁର ଜଗତନୁ । ସମିଆ ସବୁକେ, ସମକୁ କଥାନି କରୁଛେ, ଇଟା ଆମେ ନାଇଁ ଜାନି ।

ନାଇଁ ଜାନି ବଲି, ଆମେ କଥାନିକେ ବଦଲେଇ ପାରୁଥିଲାଁ, ଜୁଡି ପାରୁଥିଲାଁ, ସୁନୁଥିବାର ଲୋକ କେ ଦେଖି କରି ତାର ମନ ଜାନିକରି । ଗୁଟେ କଥାନି ଏକା ପିଲାଁକୁ କହେଲେ ଅଲଗ ହଉଥିଲା, ଆର ଅଲଗ ହଉଥିଲା ସାଁଗ ସରସାନେ କହେଲେ । ଇଟା

ଆମେ ଜାନିଥିଲାଁ , କହୁଥିବାର ଲୋକ ବି ଜାନିଥିଲେ । ହଜାର ହଜାର ବଛର, ହଜାର ହଜାର କଥାନି ହଜାର ହଜାର ଥର କହିଛନ ଲୋକ, ସୁନିଛନ ଲୋକ, ସବୁ ଥର ଭିନେ ଭିନେ, ସବୁଥର ନୁଆଁ ନୁଆଁ । ଇ କଥାନି ମନକୁ ସମିଆର ଚିନହା ହେଥିର ଲାଗି ନାଇ ଥାଇ, ନାଇଁ ଥାଇ ଠାନର ଚିନହା, ନାଇଁ ଥାଇ ଲୋକର ଚିନହା । ଥିଲା ଖାଲି ବଦଲି ବଦଲି ଚାଲି ଥିବାର ଗୁଟେ ଜଗତର କଥା ।

ଦିନେ ଠପ ହେଇଗଲା ଇ ସବୁ, ଜେନ ଦିନ ଲେଖା ହେଲା କଥାନି । ଥରେ ଲେଖକ ଲେଖି ଦେଲା ସବୁ  ଦିନର ଲାଗି, ସମକର ଲାଗି, ସମାନ କଥା । କଥାନି ନେ ବି ରହିଗଲା ସମିଆର ଦାଁତ ଚିନହାଁ । କଥାନିନେ ବି ରହିଗଲା, ଗାଁଗଁଡା, ଲୋକବାକ । ଇ ଟା ଆର ନାଇଁ ବଦଲି ପାରେ ଜୁଗ ଜୁଗ ତକ । ରହି ଜିବା ସମିଆର ଛାତିନେ ଜେନତା କେ ସେନତା, ଅଜର ଅମର । ଲେଖକର ନାଁ ବି ରହିଜିବା ତାର ସାଁଗେ, କଥାନିର ଚରିତ୍ରମନେ ବି ରହି ଜିବେ, ସବୁ କିଛି ରହି ଜିବା ଗୁଟେ ଫଟୁ ବାଗିର ଥିର । ଏନତା କଥାନି ଆଘୋ ଆମର ନାଇଁ ଥାଇ, ଇ ଟା ଲେଖା ହେବାର କଥା ଜହ ଦିନର ନାଇଁସେ ।

ଇ ସବୁ ମୁଇଁ ନାଇଁ ଲେଖିଥିତି କି, ନାଇଁ ଲେଖିଥିତି ଇ କଥାନି ସବୁ, ଜଦି ମତେ ନାଇଁ ଲାଗିଥିତା, ନାଇଁ ଲେଖଲେ ଇ ଟା ହଜିଜିବା ବଲି । ଆମେ ଭୁଗିଥବାର ଜିବନ, ଏନତା କି ମୁଇଁ ଭୁଗିଥିବାର ଇ ଜିବନନେ ମୋର ବାଗିର ଆର କିଏ ଦେଖିଛେ ଜଗତକେ ? ମତେ ଘାଁଟି ଲାଗଲା ମତେ ଉକୁବୁକ ଲାଗଲା ଇ କଥା ଭାବି ଭାବି, ଲାଗଲା ଲେଖଲେ ଜେ ଉସାସ ହେମି ।

ଜେନ ମନେ ଇଟା ପଢବେ, ଜେଭେ ବି ଆମର ସେ ବେଲର ଜିବନକେ ଭେଟବେ, ଲୋକବାକକେ ଭେଟବେ, ତାଁକର କିଏ କିଏ ଚିନହାର ଜନାର ଲୋକ ସେନେ ଥାଇ ପାରନ, ସେମନକୁ ଭେଟିକରି ଗହକି ହେବେ, ତେଭେ ସାଫୁଲ ହେବା ଇ କଥାନି ସବୁ । ସେ ଦିନତକ ମୁଇଁ ଆର ଇ କଥାନି ସବୁ ଟାକିଥିମୁ, ନୁରୁଥିମୁ ସେ ପାଠକ ମନକୁ ।

ସମକୁ ଜୁହାର  ।

*ସଂତୋଷ କୁମାର ରଥ*
*୧୫ ମେ ୨୦୨୦*



# ସାହେବର୍ ମରହା ଆର ଚାଏରଝନ ଚଉକିଦାର

ଗିଦରଲା ଅଠା ବାଗିର ଚକଚକ୍ କରୁଥିଲା ସାହେବର ମୁହୁଁ । ଗଁଧୁ ନାଇଁ ଥାଇ କି ବାସୁ ନାଇ ଥାଇ, ମାଛି କାଛି କିଛି ନାଇଁ, ଖାଲି ଟିକେ ଫୁଲିଥିଲା । ଫୁଲିଥିଲା ବଲି ଦିସୁଥିଲା ଆରୁ ଧୋବ, ଆରୁ ଚକଚକ । ଛିଁଲେ କରା ବାଗିର ଜିଲିମ୍ କରୁଥିଲା । ଛାଟ ହେଇକରି ସୁଇଥିଲା ସାହେବ । ଜେନତା ଖଁଡେ ଗୁରଲା ସେମେଲ କାଠ । ଆଏଁଖ ଖୁଲାଥିଲା, ନାକେ ଚୁଁଟା ହେଇଥିଲା ରୁଆ । ସାରା ଦିହେ ତେଲ ଭିଜେଇକରି ଢ଼ାପି ଦେଇଥିଲେ ଖଁଡେ ଧୋବ ଚରଚର ଥାନ କପଡା । ସାହେବ ସୁଇଥିଲା ଗୁଟେ ଲମହା ବାକସ ଭିତରେ ।

ଆମର କାମ ବଏଲେ ଦିନକ ଦୁଇ ଥର ବାକସକେ ଖୁଲବ ଟିକେ, ଟିକେ ଟିକେ ତେଲ ଭିଜେଇ ଦେବ ସବୁଆଡେ, ଆର କଣା ଗୁଟେକେ ଗୁଁଡ, ଝିଟି ଦେବ ଗୁଡୁମୁଡ୍ ତକ୍ । ତାହେରୁ ଚାଲ, ଜେନକେ ବଲୁଛନ କବଡନ ସାହେବ ।

ଜେନ ଦିନ ଆମର ଦେଖା ହେଲା କିଏ ଚିନହିଥିଲା କାହାକେ । ହଜାରୁ ଆସିଥିଲା ଫଲସାପଦରୁ, ଗଜପତି ଆଇଥିଲା ଖଇରମାଲୁ, ତମେ ଅଭି ତ ଆଇଥିଲ ବିଜାଖମନୁ ଆର ମୁଇଁ ଖରଝୁରା ନୁ । ଚାଏର ଲୋକ ଜମା ହେଲାଁ, କିହେ ନାଇଁ ଜାନି କାଣା କରବାକେ ଆମକୁ ଆଇଛେ ଇ ଡକରା ।

ରାଏଗୁରୁ ଆର ରଜା ପରେ ବସିଥାନ୍ । ଆର ଆର ବଡ ବଡ ପଁଡିତ ବି ବସିଥାନ୍ । ଭାଲନି ପଡିଥାଏ କାଣା କରିହେବା ଇ ସାହେବର ମରହା କେ ? କିଏ ଇ ମରହା ସାଁଗେ ଜିବା, କେନେ କବର ଦିଆହେବା, ସଭେ କହୁଥାନ ଆମର ଦେସୁ ଜାଉ ତ ଇ ମରହା । କିଏ ଝନେ ଫାଁଦିଦେଲା ଆମକେ, ବାହାରର କଚରିନେ ବସିଥିବା ଚାଏର ଝନ

ଚଉକିଦାର୍‌କେ । ସେ ଦିନୁ ଆମେ ଚାଲିଛୁଁ ଜେ ଚାଲିଛୁଁ । ଘରେ ଲୋକ ଖବର ପାଏଲେନ କି ନାଇଁ କିଏ ଜାନେ । କଥା ପଟଲେ ତ ଫିରିହେବା ଗାଁକେ ।

"ମୁଁଇ କହୁଛେଁ ଇ କଥା ସହଜେ ନାଇଁ ପଟେ ବୋ । କେନ ରଜା କାଏଁ କରି ହଁ ବଲବା ? ତାର ତ ଫେର ପୁଓ ପରଜା ଅଛନ । ସାହେବର ମସାନ, କାଣାକେ ବୁଝବା କାଣାକେ ରୁସ୍‌ବା କିଏ ଜାନିଛେ । କିଏ କାଏଁ କରି ଇ ଦୁଖ ମୁଡ଼ାବା କାଲକାଲ କେ । ଆମର ରଜା ତ ଫେର ନାଇଁ ବଏଲାଜେ ଚଲଲା । କାଣା କଲେ ଇ ଗୁରା ଲୋକମାନେ ।"

"ହଏବୋ ଅଭି, ତମର ଇ ବିଜାଖମନର ଲୋକ ସବୁବେଲେ ବଡ କହୁ ଦେଖୁଛେଁ । ଦୁଖ କଣାରେ, କେନତା ନାଇଁ ବୁଝବାର, ଦୁଖ କାଣାକେ । ମସାନ୍ ହେଲେ ତ ଦେବତା ବାଗିର ଆର ଇଟା ତ ସହଜେ ସାହେବର ମସାନ । ଗୁଟେ ମୁଟେ ଗୁରା ଦେବତା । ତାର ସାଁଗେ ଗଲେ ତତେ ଦୁଖ ପଡୁଛେ । ଆରେ ବେଡା, ବୁଝୁନାଇଁ କେନତା, ବଁଚିଥିଲେ ସିନା ସାହେବ ଆମର କଥା ନାଇ ବୁଝେ ବଲି, ଜାହା କହିଦେଲେ ବି ପାର । ଇଟା ପରେ ମସାନ ବୋ । ସବୁ କଥା ବୁଝ୍‌ବା, ସବୁ ଭାସା ବୁଝ୍‌ବା । ଏନ୍‌ତା କି ମନର କଥା ବି ବୁଝ୍‌ବା । ଜେତକି ବେଲ ତକ ମସାନ ସାଁଗେ ଅଛୁଁ, ଦେଖି ଚାହିଁ କରି କଥା ହେମା ସଭେ । ବୁଝ୍‌ଲୁତ ।"

ହଜାରୁର ଇ କଥା ସୁନ୍‌ଲା ବେଲୁଁ କଥା ହେବା କେ ବି ଡର ଲାଗୁଛେ । ଜାହା କହେବ ଜିଏ ବି ଠରାନରା ଥି ।

ଆଘେ ଘୁଡାନେ ଜଉଛେ କବ୍‌ଡନ ସାହେବ । ତାର ପଛେ ଚାଲିଛନ ଦସ୍‌ଝନ ସିପେଇ ବିଗୁଲ ବଜେଇ କରି । କେତେବେଲେ କେନ ସିପେଇ  ପଲେଇ ଜଉଛେ କେନ୍ ଗାଁକେ, କେନ୍ ଉମ୍‌ରା, କେନ ଗଁତିଆର ନିକେ, ଗାଁନୁ ଧରି ଆନୁଛେ ଖାଏଦ୍ ଖରଚା । ରଁଧା ବସୁଛେ, ଖଉଛୁଁ ଆମେ, ରାଏତ୍ ସୁଉଛୁଁ, ଚାଲୁଛୁଁ ସକାଲ ହେଲେ । କେନେ ଗୁରଭୁଜା, କେନେ ଦହିଚୁରା, କେନେ ସିକାର ଝୋଲ ତତଲା ଭାତ, ଖାଏଦର ଉନା ନାଇଁ ହେଲେ ଚାଲୁଛୁଁ ଜେ ଚାଲୁଛୁଁ ।

କେତେ କଥା ସୁନୁଛୁଁ, କେତେ କଥା ହୁରଗୁନି ହଉଛୁଁ ମନେ ମନେ, ସାହେବର ମରହା ସାଁଗେ, ଆମେ ଇ ଚାଏର ଝନ ଚଉକିଦାର ।

********

ଆମର ଭିତରେ ଗଜପତି ଟିକେ ଭୁରକୁଟିଆ । ଟିକେ ଟିକେ କଥାକେ ହଁସେଇ ଦେବାଜେ ପେଟ ଫୁଲିଜିବା । ସେଦିନ ସକାଲୁ ସକାଲୁ ବାଟେ ପଡଲା ଖଁଡେ ଗାଁ । ନାଁ କାଣା ତ ସୋର ନାଇଁ ପଡୁଛେ । ଗଁତିଆ ବଜାଗଜା ଧରିକରି ବାଟ ବରି ଆଏଲା ବାଗିର ଜୁଗିଛେ ଗାଁ ମୁଡସେ ।

ଗଜପତି କହେଲା, "ଦେଖ ଦେଖ ଇ ଗାଁର ଗଁତିଆ ଆଏଲାନ ଜୁଏଁ କରବା

ଜେନତା ଇ ସାହେବର ମରହା କେ” । ପହେଲା ଆଏଲେ ଭଁଡାରି ଆର୍ ଗଉର । ପାଏନ୍ ଧାରେ ରୁକଲେ ଘୁଡାଗାଡ଼ିର ଆଘେ, ଚଉଲ ବଁଦାଲେ ।

କାହିଁ ଧୁରିଆ ଥିଲେ ଲୋକ, ରଡି ଛାଡଲେ ହରିବୋଲ, ହରିବୋଲ । ଗାଁ ଭିତରେ ଥିଲେ ବହ ଭୁଆସେନ, ହୁଲାହୁଲି ଦେଲେ । ବଜାନେ ଗରଜିଗଲା ଚାରିଖୁଡି । ଗଁତିଆ ଡଁଡାସରାନ ହେଇ ପଡଲା କବଡନ ସାହେବର ଆଘେ, ଆର ନଇଁ ଉଠଲା । ଉଠ୍‌ଲେ ତ ଗାଡି ଜିବା ।

ଦେଖ ଦେଖ ବଏଲା ବେଲକେ ଚେତା ବୁଡି ଜାଇଛେ ଗଁତିଆର । ଝାଲେ ଭିଜି ଜାଇଛେ ଦିହି ସକାଲୁ ସକାଲୁ । ଚେତା ଆଏଲା ଜେନତା ଥରଥରୁଛେ ଦେବତା ବାଗିର । ଥରଥରୁଛେ ଜେ କାହୁଁକାଣା, କାଣା କହୁଛେ ଜେ ବୁଝିନାଇଁ ହେବାର ।

କେତେ କସ୍‌ଟେ ମସ୍‌ଟେ ଦେସି ସିପେଇମାନେ ଜାହା ବୁଝଲେ, ବୁଝାଲେ କବଡନ୍ ସାହେବକେ । ଗଁତିଆ କହୁଛେ, ତିନ୍ ଦିନ ଗଲେ ଗାଁନେ ଅଛେ ଦୁଇଟା ବିହାଘର, ଗୁଆ ଗୁଁଡା, ପତର ପେଁଡି ଗଲାନ ଧୁରଧୁର ଗାଁକେ । ଏଛେନ୍ ଇ ଗାଁକେ ଆର କିଲି ନାଇଁ ହୁଏନ, ସୁଧି ସଜେଇ ନାଇଁ ହୁଏନ । ସାହେବ ଦେବତାର ଲାଗିତ ପଡିଛେ ଇ ସଂସାର, ଚରିବୁଲି ଖଉ, ଜେନେ ରହେବା ରହୁ, ଆମର ଇ ଗାଁକେ ଆଏଁଖ ନାଇଁ କରୁ । ସାତଟା ବୁକା, ଏକୁସଟା କୁକରା, ଦୁଇକୁଟା ଅଲୁଆ ଚଉଲ, ଆର ପଟେ ଘୁସରା, ଆମେ ଦଉଛୁଁ ସାହେବ, ଗାଁକେ ବାଟ ଭାଁଗି କରି ତମେ ଜ ।

କବ୍‌ଡନ ସାହବେ ଘୁଡାନେ ବସିଥିଲା, ଲୋକବାକ ଦେଖିକରି ଘୁଡାନୁ ଉତରି ପଡଲା । ମାଏଝି ମାନକର ହୁଲାହୁଲି, ଲୋକମାନକର ହରିବୁଲ ଆର ବଜାର ଭରନି ପାରନେ ନାଇଁ ବୁଝିପାରଲା କାଣା ହଉଛେ ଇଟା । କାର ହାତେ ଖଁଡାଟେ ନାଇଁ କି ବାଡିଟେ ନାଇଁ ହେଲେ ଗାଁ ଭିତରକେ ଜିବାକେ ବାଟ ବି ନାଇଁନ । ପଛେ ବୁଝଲା ଇ ଖାଏଦ ଖରଚା ଦେଖିକରି, ଗଁତିଆ କହୁଛେ ଗାଁ ତରାନେ ଜେନ୍ ବାଟ ଅଛେ ଟିକେ ବୁଲି କରି, ସେ ବାଟେ ଜିବାକେ । ବିନତି କରୁଛେ ଗଁତିଆ, ଭେଟି ଦଉଛେ ଇ ବୁକା, କୁକରା, ଧୁରିଆନେ ବଁଧା ହଇଛେ ଗୁଟେ ଘୁସରା ।

କବ୍‌ଡନ ସାହେବ ଠାରିଦେଲା, “ଚଲୋ” ।

ଦୁଇ ଝନ ଦେସି ସିପେଇ ବୁଝେଇଦେଲେ ଗଁତିଆକେ, ସାହେବ ରିସମି ହଉଛନ । ଇ ରସଦ ସବୁ ଧରି କରି ତମର ଇ ଗାଁର ଦସ ବାର ଲୋକ ଚାଲୁନ ଆମର ଆଘେ ଆଘେ । ତେଲ ନଦି ଖଁଡି ଆମେ ଆଏଜ ରାଏତ ସୁଇମୁଁ, ସେନେ ଆମକୁ ରାଁଧିବାଢିକରି ଦେବେ, ଆର କାଏଲକେ ଫିରି ଆଏବେ । ଇ କଥାକେ ଜେନତା ଟାକିଥିଲେ ସବୁ ଲୋକ । ଚାଲଲେ ଆଘେ ଆଘେ ।

ବିଗୁଲ ବଜେଇ କରି ତାର ପଛେ ପଛେ ଚାଲଲେ ତିନ୍ ତିନ୍ ଝନ ହେଇ ନ ଝନ୍ ସିପଇ, ଗୋଡ ପିଟି ପିଟି, ବାଡିକେ ଡେବରି ଖଁଦେ ପକେଇ କରି ହାତ୍ ଫିକିଫିକି । ପଛର ଦୁଇଟା ଘୁଡାଗାଡିନେ ଥିଲା ବଁଧୁକ, କପଡାଲତା । ତାହେଁରୁ ଥିଲା ଆମର ଘୁଡାଗାଡି । କବଡନ ସାହେବ, ଆରଝନେ ସାହେବ ଆସିଥିଲେ କେନୁ ଜେ, ସେମାନେ ଥିଲେ ଆମର ପଛେ । ଆଗକେ ଦେଖଲେ ଲାଗୁଛେ ଜେନତା ବିହାଘରର ବରାତି । ପଛକେ ଇ ସାହେବମନକର ମୁହୁଁକେ ଦେଖଲେ ଲାଗୁଛେ ଜେନତା ଜିବନ ନାଇଁଥିବାର ଦୁଇଟା ଭୁତ ଚାଲିଛନ ଆମର ପଛେ ପଛେ ।

ମୁହୁଁ ସୁଖି ଜାଇଛେ, ଦିହି ସାରା ଲାଲ ଧୁଇଲ । ଫାଟି ଜାଇଛେ ଗୁରା ଚମଡା । ତାଁକର ତାଁକର କାଣା କଥା ହଉଛନ କେଜାନେ । ହୁଁ ଆପେ କିଏ ଝନେ ଝପଟି ଜଉଛେ ଘୁଡାନେ, ସେ ଆର ନାଇଁ ଆସବାର, ଫିରୁଛେ ଆର ଗୁଟେ ନୁଆଁ ସାହେବ ଦିନେ ଦୁଇ ଦିନର ପଛେ । ଦୁଇ ସାହେବ କଥା ହଉଛନ କାଣା କାଣା । ଘାଏ ଘାଏ ଲାଗୁଛେ ଗାଲି ଲାଗୁଛନ । ତୁମ ପଡୁଛନ କୋସ କୋସ, ଖାଲି ସୁଭୁଛେ ଘୁଡାର ଟାପୁ ଟପ୍‌ଟପ୍ ଇ ପଥରିଆ ବାଟେ ।

ବାଟ ଭାଁଗି କରି ଲୋକ ଭାଗି ଜଉଛନ କାହିଁ କେତେ ଧୁରୁ, ଜେତେ ଧୁର ସୁଭୁଛେ ବିଗୁଲ ଆର ଇ ବଜା, ଲୋକ ଛିନା ହେଇ ଜଉଛନ । ମହୁଲ ଝାରେ ଥିପୁଛେ ମହୁଲ କିହେ ନାଇଁ ଆସି ଆଝିର ବେଟବାକେ ।

ଆଏଜ ଇ ବାଟେ ସାହେବର ମରହା ଜିବା ବଲି ଛିନା ପଡିଛେ ଗାଁର ବଁଧ, ଗଧା ପଧା ସବୁ ଘରେ । ଛିନା ହେଉଛେ ନଦିର ଘାଟ, ଚାଲତି ବାଟ, କୋସ କୋସ ଖାଲି ଛିନା ଛିନା, ଛିନା ଛିନା । ଧୁରେ ଖାଲି ଖାଲି ଘର, ଘରର କବାଟବାଟ ବଁଦ । ଗାଁ ମୁଡସେ ଠିଆ ହେଇଛନ ଗାଁର ଗଁତିଆ, ଜାନି ଆର ପାଁଚ ଝନ ବୁଢ଼ା ବୁଢ଼ା ଲୋକ, କେନେ ହାତ ଜୁଡିକରି ତ କେନେ ମୁଡ ଗାଡିକରି । କେନ୍ ଗାଁନେ ଗଁତିଆର ସାଂଗେ ଠିଆ ଉଠିଛନ ପଁଡିତ, ରଡିକରି ପଡୁଛେ ମନତର । ଆମେ ଚାଲିଛୁଁ, କେନକେ, ଆମେ ନାଇଁ ଜାନି କି କିହେ ନାଇଁ ଜାନି ।

********

"ଆମେ ଆର ଚାଲୁଥିମା କେତେ ଦିନ ଦଦା", ଦିନେ ଦିନେ ଗଜପତି ପଚରାସି ।

ହଜାରୁ କହେସି "ମତେ ନାଇଁ ଦେଖଲେ ଭାତ ନାଇଁ ଖାଏ ମୋର ଝି, ନୁରସି ଜେ କାହୁଁ କାଣା ଘାଏ ଘାଏ ଜର ହେଇଜାଏସି ।"

ହଜାରୁର ମୁହୁଁକେ ଦେଖିକରି ଅଭି ହଁସସି । ଅଭି ବିହା ହେବାର ମାସେ ନାଇଁ ପୁରିଥାଇ । ସମକରନୁ ସାନ ଇ ଅଭି । ମୁହୁଁ ଧୁଁଦ କରିଥିସି । ଇଆଡ଼େ ସେଆଡ଼େ ଦେଖୁଥିସି ଭକ୍‌ଭକ୍ ।

ଦିନେ ରାତି ମତେ ଗଜପତି ପଚରାଲା – ହଏବୋ ଦଦା, ଆମର ଇ ମରହା ସାଁଗେ ଆସବାର ଟାକେ ଜାତିର ଲୋକ କାଣା ବଲବେ ଜେ ?

ଚଇତର ଜନକ ଉକିଆ ରାଏତ ଅଁଧାର ହଇଗଲା ଛନେକେ । ସତେ ତ, ଜାତିର ଲୁକର କଥା ଆର ସୋର ନାଇଁ ଥାଇ ଆମର । ସାହେବର ଜାଏତ୍ କାଣା ? ଧରମ କାଣା ? ରଜା ପଠେଇଦେଲା ବଲି ସାଁଗେ ଆସଲୁ ସିନେ, ଏଛେନ୍ କାଣା ହେବାଜେ ? ଆର ଝୁମରା ନାଇଁ ଲାଗଲା ସେ ରାତି ।

କୁଲିହା ରଡୁଥାଏ । ମତେ ଲାଗଲା କିଏ ଜେନତା ଡାକୁଛେ ଧୁରୁ । ଦୁଇଟା ଛୁଆକେ କେନତା ସଁଭାଳୁଥବା ରାଏମତି, ଘରେ ତ ଥିଲା ଦୁଇ ବେଲର ଅଢ଼ିଆ, ଆଏଜ ତ ହେଲାନ ଛ ଦିନ । କାହିଁ କେତେ ଧୁରେ ଘର ଦୁଆର, ପିଲାଛୁଆ । କାହିଁ କେତେ ଧୁରେ ଗାଁ ମାଏଟ୍, ଜାତି ବିରାଦର, ଲୋକବାକ । କାହିଁ କେତେ ଧୁରେ ଆମେ, କାଏଁ କରି ବୁଲୁଛୁଁ, କାଏଁ କରି ଆଏଲୁ ଇ ମରହାର ସାଁଗେ ।

ସାହେବର ମର୍ହା ସୋର ପଡଲେ ଚକ୍ ଲାଗସି ସବୁଆଡୁ । ଇ ଜନକ ଉକିଆ ରାତିର ଧୋବ ଭିତରେ ସବୁଆଡ଼େ ବିହିଲି ଜାଇଛେ ସାହେବର ମରହା । ମରହା ସତେ ବୁଝୁଥିବା ଆମର ମନର କଥା, ଡର ବି ଲାଗସି, ଦୟା ବି ଲାଗସି ।

କେନେ ତମର ଘରଦୁଆର ସାହେବ ! କେନେ ଅଛନ ପିଲାଛୁଆ ମାଁ ବୁଆ ? କେତେ ମାସର ବାଟ ତମର ଗାଁ ସାହେବ, କିଏ କିଏ ଅଛନ ତମର ଘରେ ? ତମର ବି ମହୁଲ ଗଛ ଅଛେ ? ତମର ବି ଗାଏ ଦୁହା ଲାଗିଥିବା ତ ? ତମର ବୁଢ଼ା ବାପର ଖାସିଁ, ଛୁଟି ମାଁର ପେଟ ଦୁଖାର ଲାଗି ତମେ ଉସୋ ଆନି ଆସିଥିବ ସହରକେ, ଆର ତମର ରଜା ତମକୁ ପଠେଇ ଦେଇଥିବେ ଆମର ଇନକେ । ହେନତା ତ ! କି ତମେ ଖାଏମି ପିଇମି, ଦେସ ଜଏ କରମି ବଲି ଆଇଥିଲ ଆମର ଇନକେ ? ମୁନୁସର ଜିବନଥି କାଣା ଅଛେ ସାହେବ ! ଏଛେନ ଅଛେ ଏଛେନ ନାଇଁ । ଇଥିର ଲାଗି ଏତେ ଧଁଦି ହେମା କାଏଁକରି । ଜେ ଜାର ଜେନେ ଦୁଖେ ସୁଖେ ରହେଲେ ନାଇଁ ହେତା । ତମେ ସାହେବ ଲୋକ ହୋ, ତମର ବିଚାର ଅଲଗା ବି ଥିବା ।

ଜନ ବୁଡି ବୁଡି ଅଉଥିସି । ଉକିଆ ସରି ସରି ଅଉଥିସି । କାହିଁ କେନ୍ତା ଖଁଡେ ଖଁଡେ ମେଘ । ଝୁମରା ଥରେ ଭାଁଗି ଗଲେ ଖାଲି ଛଟପଟ ଛଟପଟ । ଘୁଡାଗାଡି ଉପରେ ବାକସ୍ । ବାକସ୍ ଭିତରେ ଧୋବ କପଡା ଥି ଗୁରହା ହେଇଥିସି ସାହେବର ମରହା । ତାର ପାସେ ମସନା ପକେଇ ସୁଇଥିସୁଁ ଆମେ ଚାଏରଝନ ।

ସିପେଇଟେ ହେ ଦିନ କହୁଥିଲା, ସାହେବ ମରିଛେ ପାଲି ଜରେ । ହେଇଥିବା । ଆର ଦିନେ କିଏ ଝନେ କହୁଥିଲା ସାହେବକେ ମାରିଛନ କଁଧମାନେ । ହଇଥିବା । କଁଧ ଆର ଗୁରା ସାହେବ ମନକର ତ ଝଗଡା ଲାଗିଛେ କାହିଁ କେତେ ଦିନୁ ।

ଚାଏର କୋର କଁଧ ମଲେନ, କେତେ କଁଧ ତ ଭାଗି ଗଲେନ ଅଗନା ଅଗନି ବନସତର କେ । ସାହେବମାନେ ପରେ କହୁଛନ, ଜମି ଚାସ କରୁଛ ଜଦି ଜମିଦାରକେ ପଏସା ଦିଅ । କଁଧମାନେ କହୁଛନ ପଏସା ପାଏମୁ କେନୁ । ହଲଦି ନିଅ, ବିରହି, କାଁଦୁଲ ନିଅ, ଜମିନେ ଜେନଟା ଫଲୁଛେ ସେଟା ନିଅ । ଇଥିର ଲାଗି ଇ ଝଗଡା, ଇଟା ବି ନାଇଁ ଛିଡେ, କିହେ ତ ନାଇଁ ବୁଝବାର । ତମେ ତ ମରିଗଲନ ହୋ ସାହେବ ! ଏଭେ ତ ସବୁକଥା ବୁଝୁଥିବ, ଜାନୁଥିବ, ଆମେ ପଏସା କେନୁ ପଏସୁ ? ତମେ ପଏସା ପିଟୁଛ, ତମରନେ ଅଛେ ଛାଁଚ, ତମରନେ ଅଛେ ପଏସା । ଚାସ ଜମିନେ ପଏସା ତ ନାଇଁ ଫଲେ ?

ଛାଡ଼ । କିଏ ବୁଝୁଛେ କାର କଥା । ତମେବି ନାଇଁ ବୁଝବାର, କଁଧମାନେ ବି ନାଇଁ ବୁଝବାର ।

*******

"ପାଟନାର ରଜା ବି ନାଇଁ ବୁଝଲା" ଆଏଜ ସକାଲୁ ସକାଲୁ କହେଲା ଗଜପତି ।

ସରିଜାଇଥିତା କାମ ଆମେ ଘରକେ ଜାଇଥିତୁଁ । ଜାତି ଗଁଗାକେ ଭୁଜିଭାତ ଦେଇକରି ଜାଏତ ହେଇଥିତୁଁ । ନାଡୁ ହେଇଥିତୁଁ ଇ ମରହା ବୁହାର ଲାଗି । ହେଲେ ସରି ଜେଇଥିତା ଇ କବାର । କବ୍ଡନ ସାହେବ ହେ ଦିନ କହୁଥିଲା ତମକୁ ଚାଏର ଝନକେ ସିପେଇ ଚାକରି ମିଲବା । ଇନାମ ବି ମିଲବା ସରକାର ବାହାଦୁରନୁ । ଖାଲି ଠିକ ହେଇ ଜଉ କେନେ କବର ଦିଆହେବା । ସେନକେ ପୁହୁଁଚି ଗଲେ ତମର କାମ ସେସ । ତମେ ଫିରିଜିବ ତମର ଘରମନକୁ ।

"କବର କାଣା ସାହେବ" ! ଅଭି ପଚରେଇ ଦେଲା ଭୁଲେ ଭୁଲେ ।

ପିଲା ଲୋକ ତ । ସାହେବ ରିସମି ହେବା ବଲି ଆମେ ଡରି ଜଉଥଉଁ । ହେଲେ ହଁସଲା କବ୍ଡନ ସାହେବ । ବଡା ଉସତେ କହେଲା କବର କାଣା, କେନତା କରି ବନାସନ୍, କାଏଁକରି ବନାସନ । ଅଧା ବୁଝି ହଉଥାଏ, ଅଧା ଖାଲି ଆମେ ବୁଝୁଛୁଁ ବଲି ମୁଁଡ଼ ହଲଉଥଉଁ । ସାହେବ ହଁସଲେ ଆମେ ହସୁଁଥଉଁ ।

ଏତକି ଦିନେ ଇଟା ପହେଲା ଦେଖଲୁଁ, କବ୍ଡନ ସାହେବ ବି ହଁସସି ବଲି । ଆହା ବିଚରା ହଁସୁ । ଡର ନାଇଁ ଲାଗୁଥିବା କାଏଁ ? ଦୁଖ ନାଇଁ ଲଗୁଥିବା କାଏଁ ? ତାଁକର ଭିତରୁ ପରେ ଝନେ ମରି ଜାଇଛେ ।

ଆମେ ଜେତକି ବୁଝଲୁଁ ମୁନୁସ ମରି ଗଲେ ସରିନାଇଁ ଜାଏ ଜନମ । ତାର ପାପ୍ ପୁଇନ ଦିନେ ବିଚାର ହେବା । ପରଭୁ ଡାକ ଦେବେ ସମକୁ ସେଦିନ ସେ ବିଚାରର ଠାନକେ । ସଭେ ଜିଏ ଜେଭେ ମରିଥିବା ଗଦା ହେବେ ସେନେ ସେଦିନେ । ସେତକି ଦିନ ତକ୍ ସୁଇବାର ଲାଗି ଇ କବର ।

ଏଛେନ ଆମେ ଜାନୁଛୁଁ ଆମର ରଜାମନେ କାଏଁକରି ମନା କରୁଛନ କବର ଲାଗି । ଜଗତର ସେସ ଦିନ ତକ କବର ଭିତରେ ସୁଇଥିବା ଗୁଟେ ମସାନ । ସୁଇଥିବାନ, ନାଇଁ ଖାଏ, ନାଇଁ ପିଏ, କାର ସାଁଗେ କଥା ବାରତା ନାଇଁ ହୁଏ ? ତୁମ ପଡି ସୁଇ ପାରବା ? ମରି ଗଲା ଜେ କାଣା ହେଲା ସେ ବି ତ ଗୁଟେ ଆତମା । ଏତକିଟେ ଦିନ ରହି ପାରବା କିଏ ଟାକି କରି, ଖୁଜୁର ବୁଜୁର ନାଇଁ ଲାଗେ ? କାହକେ ଭେଟତିଁ କଥା ବାରତା ହେତିଁ ନାଇଁ ଲାଗେ ?

କେନ ରଜା ବୁଝବା ହୋ, ତାର ତ ଫେର ପୁଓ ପରଜା ଅଛନ ? ଗୁଟେ ସାହେବର ମସାନକେ ରଖବ କେନ ଗାଁନେ, ଗାଁନେ ତ ଫେର ପିଲାଛୁଆ ବହ ଭୁଆସେନ ଅଛନ । ଅକାଲେ ସକାଲେ ଭେଟ ହେଇଗଲେ କାର ସାଁଗେ, କେନ ଗୁନିଆଁକେ ଡାକବ ? କିଏ ବୁଝାବା, କାଣା ଖାଏସି ସାହେବର ମସାନ, କିଏ ଜାନିଛେ ? ଇଥିର ଲାଗି ରଜାମନେ ମନା କରୁଛନ ।

ହଜାରୁ କହେସି ଆମେ ଏନତା କିଁଦରୁଥିମା ନ । ନାଇଁ ସରେ, ଆମର ଇ ଦୁଖ ନାଇଁ ସରେ । କେନ ଲଗନେ ବାହରିଥିଲା ଗାଁନୁ କିଏ ଜାନେ ।

ଆଏଜ ଗୁଟେ ସିପେଇ କହୁଛେ ପାଟନାର ରଜା ପରେ ବଏଲା: "ହଁ ତୁପବ ବଏଲେ ତୁପ ହେଲେ ଆମର ଇ ପାଟଣାଗଡେ ଏକା ତୁପ । ଦସରାନେ ମାଁ ପାଟମେସରି କିଲିଦେବେ ତମର କବର, ବାଡିନେ ପିଟିକରି । ଲୁହା କଁଟା ପିଟିଦେବେ ଚାରହି ଖୁଟି । ଜେଡେ ବଡ ମସାନ ବି ହଉ ସେ ସୁଇଥିବା ତ ସୁଇଥଉ ତାର କବର ଭିତରେ । ହେଲେ, ଜନମ ଦିନେ ଫି ବଛର ଜେନ ପୁଜା କରମୁଁ ବଲୁଛ ଆମର ଇନେ ହେଟା ନାଇଁ ଚଲେ । ଆମର ହେନତା ଆଠମଲିକର ହାତ ଗୋଡ ମୁଡ ସବୁ ଆମେ ନାଇଁ ତୁପିଛୁଁ, ପୁଜା ତ ନାଇଁ କରବାର । ପାଟମେସରି କିଲି ଦଉଛେ ଫି ବଛର । ହେ ପାସେ ଏକା ଜଦି କରବ କବର କର । ହେଲେ ଉନଝିଆ କେନେ ମୋର ରାଏଜେ ଆର ଠାନ ନାଇଁ ଦିଏ ।"

ସେଦିନ ଜେନ ଦୁଇ ସାହେବ ଗାଲି ଲାଗୁଥିଲେ, ହେଥିର ଲାଗି ପରେ । କବଡନ ସାହେବ ଠିକ ବୁଝୁଥିଲା ପାଟନା ରଜାର କଥା । କହୁଥିଲା "ଇଟା ଆମର ସାହେବ ମନକୁ ଗୁଟେ ଅପମାନ । କାଲକେ ମୁଇଁ ମରିଜିମି କାଲକେ ତୁଇ ମରିଜିବୁ, ଆମର କବର ଲାଗି କାଣା ଠାନ ନାଇଁନ ଇଁଗରେଜ ସରକାରର ଏଡିକି ବଡ ପୁରଥିନେ ? ଜନମ ଦିନେ ଧୁପ୍ ଟିକେ, ଦିପ୍ ଟିକେ, ଫୁଲଦୁରା ଦେବାକେ କିହେ ନାଇଁନ ? ଜରୁର, ଇଲିଅଟ ସାହେବକେ ଆମେ କବର ଦେମା, ସନମାନ କରି କରି । ଆମର ଇଁଗରେଜ ଭାଏଟେ ଆଏଜ ମରିଛେ, ଇଁଗରେଜ ଜାତିର ଗଉରବର ଲାଗି, ଆର ସାସନର ଲାଗି ।"

ଆମେ ହେ ଦିନ ଏକା ଜାନଲୁ ଇ ସାହେବର ନାଁ ଥିଲା ଇଲିଅଟ । ବଡଟେ ଘରର ପୁଓ ଥିଲା, ଦୁଇ ବଛର ହେଲା ଆସିଥିଲା ଆମର ଇ ଦେସକେ ଜାହାଜନେ ବସିକରି । ଘରେ

ଅଛନ ତାର ପିଲା କୁଟୁମ୍, ମାଁ ବୁଆ । ଆହା ବିଚରା । ମଲା ବଲି କିହେ ନାଇଁ ଜାନଲେ । କବର ଲାଗି ଠାନ ଖୁଜୁନ ଖୁଜୁନ ବାସି ମରହା ହେଲାନ ଆଠଦିନ । ସାହେବମନେ କହୁଛନ ଜେନେ ତାର କବର ହେବା ଫି ବଛର ପରେ ମରାମତି ହେବା, ବଛରକିଆ ଜନମ ଦିନର ପୁଜାର ଲାଗି ପଏସା ବି ମିଲବା । ଇ ସବୁ ସରକାର ବାହାଦୁର ଏକା ଦେବେ । ହେଲେ ଠାନଟେ ପହେଲା ମିଲୁ ତ କେହେନି ବି ରଜାର ଠାନୁ ।

ସିପେଇମାନେ କଥା ହଉଥାନ ଜେନ ରଜା କି ଜମିଦାର ଠାନ ଟିକେ ଦେବେ କବର ଲାଗି, ଇଁରେଜ ସରକାର ତାହାକେ ଉପାଧି ଦେବେ, ପୁରୁସକାର ଦେବେ । ବିପଦ ଆପଦଥି ସାହା ବି ହେବେ । ଆମେ ବି ଡାକୁଥାଉଁ ଆମର ଦେ ଦେବତା । ସାହେବ ହେଲା ଜେ କାଣା ହେଲା ମୁନୁସଟେ ତ । ବହୁତ ଦୁଖ ସହେଲାନ ବିଚରା ମଲାପଛେ ।

ଅଭି ମାଏଲିକେ ବଦିଥିଲା ବୁକା, ହଜାରୁ ବଦିଥିଲା ଦୁଇହଲ ପରୁଆ । ପାଟନା ଜଉଁଜଉଁ ଆମେ ମୁହୁଁଟାଲୁଁ ନୁଆଗଡ ଆଡେ । ସୁନଲୁଁ ବେଁଦରା ନୁଆଁଗଡର ରଜା ସେସେ ବୁଝଲା ଉସାସ ଲାଗଲା ସମକୁ ।

ଦୁଇଦିନ ହେଲା ଗଁଧୁଥିଲା ଇଲିଅଟ ସାହେବର ମରହା । ବାକସୁ ଥିପୁଥିଲା ପାଏନ । ନାକେ କପଡା ଦେଇକରି ତେଲ ରୁକୁଥିଲୁ ଆମେ । ଜାହା ହଉ, ନୁଆଗଡେ ଇଲିଅଟ ସାହେବ ତାର ଦୁଖେ ସୁଖେ ରହେବା । ଜୁଗ ଜୁଗ ତକ ଟାକିଥିବା ସେ ଦିନକେ, ଜେନଦିନ ବିଚାର ହେବା ତାର ପାପ ପୁଇନ । ଥଉ ବିଚରା ସୁଖେ ଥଉ ।



# ନାରାଣ ତିହାଡିର ସପନ

ନାରାଣ ତିହାଡି କହେସନ; ସପନ ମନେ ସତ ହେସି ।

ହଉଥିବା, ନାରାଣ ତିହାଡି କହୁଥିବାର ସବୁକଥା ତ ସତ ହେସି । ଝନେ ସପନଟେ ଦେଖବା ; ଅଧୁଆ ମୁହେଁ ନାରାଣ ତିହାଡି କେ ଜାଇକରି କହେବା; ତିହାଡି କହି ଦେବେ ତମର ସପନ କାଣା କହୁଛେ । କେତେ ଥର ଆମେ ସୁନିଛୁଁ, କେତେ ଲୋକ କହିଛନ ତିହାଡିର କଥା ସତ ଏକା ହେସି । ସପନ ଆମର ମନର ଭରମ ନାଇସେ, ସପନ ଜିବନର ଗୁଟେ ସୁରାକ, ତିହାଡି କହେସନ ।

ନାରାଣ ତିହାଡିର ଗାଧବାର କିହେ ନାଇ ଦେଖି ଆଏଜ ତକ । ସବେ ଦେଖିଛନ ସକାଲ ପାଏଲା ବେଲକେ ତିହାଡି ବସିଛନ ତାଁକର ଗାଁ ଖୁଲିର ପିଁଢାଥି । ଚଁଦନ ତିଲକ ମାଖିଛନ, ମଝିନେ ମାଖିଛନ ଗୁଟେ ସିଁଦୁର ଟିକା, କାଣା ଗୁନ ଗୁନ କରୁଛନ । ରାମସିଁଆ ଗାଁନେ କେତେ ଲୋକ ଅଛନ , ହେତକି ବେଲେ ତିହାଡି କେ ପଚରେଇ ପାରବେ ତାଁକର ସପନର କଥା । ସଭେ ଜାଏସନ ଘଡେ ଠିଆ ହେସନ, ଆର ଫିରି ଆଏସନ ହେଥିର ଲାଗି । ଜିଏ ପଚରାବ ତିହାଡିର ସହେ କାଁଡି ମନତର ସରଲା ପତେ, ଠିଆ ହେଇ ଥିବ ଏକେସ କଁଟି । ସଭେ ତମକୁ ଦେଖୁଥିବେ, ଖେତକେ ଜଉଥିବାର ହଲିଆ, ସକାଲୁ ସକାଲୁ ନଏଦକେ ଜଉଥିବାର ସବୁ ପିଲା, ବୁଢା, ମାଏଝି ମୁନୁସ; କେତେ ଠିଆ ହେବ ?

ତିହାଡି ଜେଭେ ବି କଁଗାଁ ମଁଦିର କେ ଜାଏସନ ଜାନବ ଆଏଜ ଗୁଟେ ପୁଜା ଅଛେ, କାଣା ପରବ ଅଛେ । ମଁଡପ ନେ ବସିକରି ତିହାଡି ମନତର ପଢସନ, ଭୁରସୁବର ପଛେ ଠିଆ ହେଇ କରି ମନତର ପଢସନ, ଗଁଭିରା କେ ଜାଇକରି ମନତର ପଢସନ,

ପଢୁଥିସନ ଜେ ପଢୁଥିସନ । ତମକୁ ଲାଗବା ଘଁଟ ବାଜୁଛେ, ସଁକ ବାଜୁଛେ । ଥନାପତି ବୁଢା କହେସି ମହାଦେବର ସାଁଗେ କଥା ହେସନ ତିହାଡି; ଉକିଆ ହେଇ ଜାଏସି ମଁଦିର ଜେନ ଦିନ ତିହାଡି ମଁଦିର କେ ଆଏସନ ।

ତମକୁ ମିଛ ମତେ ସତ କହେସି ଥନାପତି ବୁଢା; ସୁନ ଇ ଜେନ ନାରାଣ ତିହାଡି କେ ଦେଖୁଛ, ଆଏଜକେ କୁଡେ ବଛର ତଲେ ଜେତେବେଲେ ଆଏଲା ରାମସିଁଆଁ ଗାଁ କେ; ରଜା ପଠେଇ ଥିଲା ତାର ସାଁଗେ ଦସ ଝନ ପାଇକ ।

ଦୁଲା ନେ ବସିକରି ଆଇଥିଲା ତିହାଡି ପାଟନାଗଡୁ । ବଜା ବଜେଇ କରି ବରି ଆନିଥିଲୁଁ, ଆମେ ସଭେ କଁଗାଁର ପୁଓ ପରଜା । ନାରାଣ ତିହାଡି ଗଁତିଆ ହେଲେ ହୋ..... ବଲି ଡିଁଗରା ପିଟା ହେଇଥିଲା ଆଖର ପାଖର ସାତ ଖଁଡ ଗାଁ ଥି । ନାରାଣ ତିହାଡି କେନ ଦେସୁ ଆସିଥିଲା କିହେ ନାଇ ଜାନି । ରଜା କାଁ କରି ମାଫିଦାର ଗଁତିଆ କଲେ ତିହାଡିକେ ହେତକି ବେଲେ କିହେ ନାଇ ।

********

ପଛେ, ଆମେ ସୁନିଛୁ... ପାଟନା ରଜା ପରେ ବସିଥନ ଆରୁ ଆରୁ ଲୋକ ବି ଥନ; ପଁଡିତ, ଟହଲିଆ , ଗଁତିଆ, ବାରିକ ..... । କିଏ ଝନେ ଆସି କରି କହେଲା : "ହଜୁର ଗଁଜାମନୁ ଆସିଛେ ଝନେ ପଁଡିତ । ମୁଁହ ଦେଖିକରି ତ କହି ଦଉଛେ କେତେ ଜେ କଥା; କହୁଛେ ସୋର ପଡୁ ଥିବାର ଗୁଟେ ସପନ କହ, ମୁଇଁ କହିଦେମି ତମର ଜିବନର ସବୁ ଗୁପତ କଥା । ସିଂଘ ଦୁଆରେ ଠିଆ ହେଇଛେ , ହଜୁର କେ ଭେଟମି ବଲୁଛେ, ଡାକମି ତାକେ ?"

ରଜା ଠାରି ଦେଲେ, ଟହଲିଆ କହେଲା – " ଡାକ ।"

ସଭେ ଜାନିଛନ ଦସ ଦିନ ହେଲାନ ରଜାର ମନ ଭଲ ନାଇ ନ । କେତେନି କେତେ ପୁଁଜା କିରତନ ହେଲାନ ଗଡ ଭିତରେ । ଦୁଇଥର ହେଲାନ କିସମି, ରାଏତ ସାରା ଗଡ ଭିତରେ ଗହଲ ଚହଲ । ରଜା ନାଇ ସୁଇବାର ରାତି, ଦିନ ସାରା ବସୁଛନ ଖାଲି ଦେବାରଚନ ଥି । ସାଁଗେ ରହୁଛନ ମନତିରି, ପୁରାନପଁଡା, ଗାହାକ, ବାହାକ, ପଁଡିତ ବି ଅଛନ ଗୁନିଆ ବି ଅଛନ ।

କେତେବେଲେ ରଜା କାଣା କହୁଛନ, ଠିକସେ ଜନା ନାଇଁ ପଡବା । ହେଲେ ରଜା ସବୁବେଲେ କହୁଛନ କାଣା କାଣା । କାହାକେ ହେଲେ କହୁଛନ ପାଖେ ବସ । ଏକଲା ରହେବାକେ ଜେନତା ରଜା ଡରୁଛନ, ହେତିର ଲାଗି ସବୁବେଲେ ଲାଗିଛେ ଇ ନାଟ ତାମସା ରଜାଘରେ ।

ଆମେ ସୁନିଛୁ; ହେ ପଁଡିତ ପରେ ନାରାଣ ତିହାଡି । ରଜା ତିହାଡି କେ ଦେଖି କରି ଠିଆ ହେଇ ଗଲେ, ଜୁରା ହାତ ହେଇ କରି ଜୁହାର କଲେ । ତିହାଡି ଗିତ ବାଗିର ଗାଇ ଗଲେ

କେତେ ଜେ ମନତରନ, ସମକୁ ଲାଗୁଥାଏ କେନ ମଁଦିରେ ଠିଆ ହେଇଛନ ସଭେ, ଆଲତି ହଉଛେ ଘଁଟ ବାଜୁଛେ , ସଁକ ବାଜୁଛେ ,ମହକି ଜଉଛେ ଗୁଗୁଲ ଧୁପ ।

ଦୁଇ ହାତକେ ଛାତି ପାଖକେ ଆନିକରି ତିହାଡି କହେଲେ: "ଶ୍ରୀମାନ୍ ଆମ୍ଭେ ସାମବେଦୀୟ ନାରାୟଣ ତ୍ରିପାଠୀଶର୍ମା ।ଆପଣଙ୍କ ମୁଖଚ଼ ଅବଲୋକନ କରି ସମସ୍ତ କଥା ଏବେ ଆମ୍ଭଙ୍କୁ ଗୋଚର ହେଲାଣି ; ବିପ୍ଦାତରୁ ଆପଣଙ୍କୁ ରକ୍ଷା କରିବାକୁ ଆମ୍ଭେ ସମର୍ଥ ; ଏକାନ୍ତରେ ଦର୍ଶନ ପାଇଁ ଆଜ୍ଞା ହେଲେ ସମସ୍ତ କଥା ଗୁପ୍ତରେ ପ୍ରକାଶ କରିବୁ ।"

********

ନାରାଣ ତିହାଡି ପରେ କହେସନ..... ରଜା କାଣା ପରଜା କାଣା ସମକର ସପନ ସପନ । ସପନ ଥି ସଭେ ସମାନ । ତମେ ରଜା ବି ହେଇଥିବ ଜିବନ ଥି, ସପନ ଥି ସେ ଠାଣି ନାଇ ରହେ । ତମକୁ ଡର ଲାଗୁ ଥିବା, କେନ ଗୁଟେ ପାପର ଲାଗି ହୁରଗୁନି ହଉଥିବ । କିହେ ନାଇ ଜାନି ଜେ ଲୁକିଗଲା ଭାବୁଛ, ତମେ ତ ଜାନିଛ; କେନତା କରି ଲୁକାବ ସପନ ଥି । ସେ କଥା ସପନ ଥି ଦିସିଜିବା ଜଲ ଜଲ ।

ଥରେ ଥରେ କଥା ପଡଲେ ତିହାଡି ଗୁଟେ ଗୁଟେ ସପନର କଥା କହେସନ । ଖାଲି ନାଇଁ କହନ ଇଟା କିଏ କେଭେ ଦେଖିଥିଲା । ବଢେ ଘାଏ ପଚରାଲେ କହେସନ – "କାର ସପନ ୟେ କଣ ପଚାରୁଛ ହୋ ? ଲୋକକୁ ଲଙ୍ଗଲା ଦେଖିବା ଯାହା, ତା ସପନ ଶୁଣିବା ତାହା; ସମାନ କଥା ଏକା ।"

ଥନାପତି ବୁଢା ଥରେ କହୁଥିଲା ନାରାଣ ତିହାଡି କହିଥିବାର ଗୁଟେ ସପନର କଥା । କଥାନି ବାଗିର ଲାଗୁଥିଲା । କେତେ ସତ କେତେ ମିଛ ଥନାପତି ବୁଢା ଜାନେ ଆର ଜାନେ ନାରାନ ତିହାଡି । ଝନେ ପରେ ସପନ ଦେଖଲା ଜେ ......

"ଗାଁର ସବୁ ଲୋକ ଧଉଛନ ହାତେ ସଭେ ଧରିଛନ ଗୁଟେ ଗୁଟେ ଜୁଏ ହୁଲା, ରାଏତ ବାଗିର ଲାଗୁଥାଏ ହେଲେ ରାଏତ ନାଇଁସେ, ଟିକେ ଟିକେ ଉକିଆ ଉକିଆ ହେଇଥିଲାନ, ହେତିକି ବେଲେ କେନ ଆଡୁ ଆଏଲେ ହୁଦେ ପାତି ମାଁକଡ, ହେଲେ ମାଁକଡ ମନେ ଚାଲୁଥନ ମୁନୁସ ବାଗିର, ଲୋକ ମନକୁ ସେ ମନେ କହେଲେ.... ରହ ରହ ଆମର କଥା ସୁନ, ଇ ଜୁଏ ହୁଲା କାଁ କରି ଧରିଛ, ଆମର ନେ ବି ତ ଜୁଏ ଅଛେ,.... ହେତକେ ମୁନାନୁ ବାହାର କଲେ ଗୁଟେ ଗୁଟେ ଡବା, ଡବା ନୁ ଖାଡି, ଖାଡିକେ ଜେନତା ରେତି ଦେଲେ ଜୁଏ ଜଲିଗଲା, ଲୋକ ମନେ ଆଁକରି ଦେଖୁଥନ, ପାତିମନେ କହେଲେ ନେବ ନିଅ, ସମକୁ ପାତି ମନେ ଧରେଇ ଦେଲେ ଗୁଟେ ଗୁଟେ ଡବା, ଇଟା କାଣା ହଜୁର କିଏ ଝନେ ପାତି ମନକୁ ପଚରାଲା, ପାତିମନେ ମୁହୁ ଚୁହାଁ ଚୁହିଁ ହେଲେ, ଗୁଟେ ପାତି କହେଲା......ଇତାର ନାଁ .... ଇତାର ନାଁ... ଇ ତାକେ ତମେ ବଲବ ନିଏ... ନିଏ ଖାଡି । ଲୋକ ମନେ ଜୁଏ ହୁଲା

ସବୁ ଫିକି ଦେଲେ, ନିଏ ଡବା ଗୁଟେ ଗୁଟେ ଧରି କରି ଫିରି ଆଏଲେ ଘରକେ..... ପାତିମନେ ହଁସଲେ ଜେ ହଁସଲେ ଜେ ଖିତ ଖିତ ଖିତ ଖିତ...... ଜେ ଜାର ଘରକେ ଫିରି ଆଏଲେ ଲୋକ ମନେ, ନିଏ ଡବାନୁ ବାହାର କଲେ ଜୁଏ ରଁଧା ବଢା ସୁବିଧା ହେଇ ଗଲା, ଝନେ ଦିନେ ଦେଖଲା ଜେ ନିଏ ଡବା ଗାଁକେ ଆଏଲା ଦିନୁ ଗାଁନେ ଆର ନିଏ ନାଇଁନ, ସମକର ଘରେ ତ ନିଏଡବା ଅଛେ, ଜେ ଜାର ନିଏ ନ ଚଲୁଛନ ସଭେ ,ସାସନ କରବ କାଣାକେ.... ଜୁଏ ପାଏନ ବଁଦ କରବ କାଣାକେ, ସମକର ଘରେ ତ ରହେଲା ନିଜର ନିଜର ନିଏ........"

ଥନାପତି ବୁଢା କହେସି ନାରାଣ ତିହାଡି କହୁଥିବାର ସପନ ଗୁଟେ ଗୁଟେ ଗଁଠଲି । ତାର ଭିତରେ କେତେ କଥା ଅଛେ, ଖାଲି ହିଟେଇ ପାରବାର କଥା ।

ଆର ଗୁଟେ ସପନର କଥା କହେସି ଥନାପତି ବୁଢା, ହେଲେ ସମକୁ ନାଇ କହେ, ଲୋକ ଦେଖି କରି କହେସି । ଇ ସପନ ଥି ପରେ ଗୁଟେ ଗହନ କଥା ଅଛେ । ଥିବା, ମତେ ତ ଲାଗସି ଇଟା ଗୁଟେ କଥାନି, କେତେ ଥର ଆମେ ସୁନିଛୁ କେନୁ କେନୁ ।

ଝନେ ପରେ ସପନ ଦେଖଲା ଜେ.... ରଜା ଜାଇ ଥିଲା ପାରଧି କରି, ପାରଧି ବଏଲେ କାଣା କି, ଜଁଗଲ କେ ଜିବ ବୁଲବ ଚାଲବ ମଜା ମଜଲିସ କରବ ଜିବ ଜଁତ ଜାହା ପାଏବ ମାରବ... ହେଲେ ରଜାର ଭାଏଗ ଖରାପ, ହୁଦେ ଭାଲୁ କୁଦାଲେ ବଲି ଭାଗିଗଲେ ସବ ସନ୍ୟ ସାମନତ,ରଜା ବସିଥିବାର ଘୁଡା ବି ..... ରଜା ବିଚରା ଭାଲୁ ମନକର ହାବଡେ ପଡିଗଲା, ସହ ସହ ଭାଲୁ ରଜା କାଣା କରମି ଭାବୁନ ଭାବୁନ ଭାବଲା...... ର, ଇ ଭାଲୁମନକୁ ଗୁଟେ ବୁଧି ସିଖାମି, ରଜା ତ କେତେ ବୁଧି ତାର ମୁଡେ, କେତେ କଥା ଜାନିଛେ, ଭାଲୁ ମନକୁ କହେଲା; ସୁନ ସୁନ ମୁଇଁ ହଉଛେ ରଜା ଇ ଝାର ଜଁଗଲର ମାଲିକ, ଇ ଟୋଲ ମହୁଲ ଆମ କେଁଦୁ ଇ ଖେତ ଖମନ ଇ ସବୁ ମୋର ଟା, ଜାନିଛ ତ......ସବୁ ଭାଲୁ ଏକା ସାଁଗେ କହେଲେ .... ହଇ ହଇ.. ରଜା ଫେର କହେଲା; ସୁନ ସୁନ ଇ ସବୁ ତମକୁ ଦେଇ ଦେମି, ତମର ହେଇ ଜିବା ଇ ସବୁ.... କଟୁଆଲ ନାଇଁ ଆସେ, ଉମରା ନାଇଁ ଆସେ, ଗଁତିଆ ଜମିଦାର କିହେ ନାଇ ଆସନ.... ଇ ସବୁ ତମର ହେଇଜିବା ସବୁ ଦିନର ଲାଗି...... ଭାଲୁମନେ କହେଲେ – ସତେ, ରଜା କହେଲେ, ଇଟା ଖାଲି କାଁ କରି ସୁନା ରୁପା ହାତି ଘୁଡା ବି ଦେମି; ମୋର ସାଁଗେ କିଏ ଜିବ ବଏଲେ... ...

ଥନାପତି ବୁଢା ଟିକେ କଲେ କଲେ କହେସି ...... ହେ ଥର ପରେ ଗୁଟେ ଭାଲୁ ଆଏଲା ରଜାର ସାଁଗେ; ରଜାର ତ ହାତି ଘୁଡା କିଛି ନାଇ ଥାଇ, ଦୁଇ ଲୁକ ବାଟ ସାରା ଦୁଖ ସୁଖ ହେଇ ହେଇ ଆସୁଥନ ପାହେ ପାହେ,ରଜା କହୁଥାଏ ତାର ରାଏଜର କଥା, ଭାଲୁ କହୁଥାଏ ତାର ଝାର ଜଁଗଲର କଥା, ଭୋକ କଲେ ଖଉଥନ ଫଲମୁଲ, ଝରନା ପାଏନ

ପିଉଥନ ସୋସ କଲେ.... ଚାଲୁଥନ ଚାଲୁଥନ; ବାଟେ ରଜା ଆର ଚାଲି ନାଇ ପାରଲା.... ଭାଲୁ ବଏଲା – ହଜୁର, ଜାହା ହେଲେ ବି ତମେ ତ ଆମର ରଜା ମୋର ଖଁଦେ ବସ ଆମେ ରଜଧାନି କେ ପୁହୁଚି ଜିମା ଝାଏଁ କରି; ତିନ ଦିନ ହେଲା ଝାରେ ପତରେ ବୁଲି ବୁଲି ରଜା ବି ଅଥା ହେଇଥିଲେନ, ହଁ ବଏଲେ, ରାଜଧାନି କେ ପୁହୁଚିଗଲେ ଭାଲୁ ଆର ରଜା....... ପୁଓ ପରଜା, ଗଡ ଭିତରର ଲୁକର ଖୁସି କିଏ ଦେଖେ ..... ଫିରି ଆଏଲେ ଆମର ରଜା .... ଫିରି ଆଏଲେ ଆମର ରଜା ସୁଭୁଥାଏ ସବୁବେଲେ ସବୁଆଡେ ।

ରଜା ଫିରି ଆଏଲେ ବଲି ହେ ଦିନ ରାତିନେ ଗୁଟେ ପୁଜା ପରେ ହେଲା ....ରଜା ନି ଜାନି.. ପୁଜାନେ କାଣା ହେଲା କିଏ ଜାନି, ସେ ଭାଲୁ ଆର ପତା ନାଇ ମିଲଲା .... କିଏ କିଏ କହେସନ, ମନତିରି ମନେ ପରେ ଭାଲୁକେ ବଲି ଦେଇ ଦେଲେ ହେ ରାତି ... କିଏ କିଏ କହେସନ ଜଁଗଲକେ ଗଲା ବେଲ କେ ବାଟେ ଭାଲୁ ମରି ଗଲା ତାର ତାର .... ହେଲେ ରଜାକେ ହେ ଦିନୁଁ ଡର ଲାଗୁଛେ କାହୁଁ କାଣା.... ଭାଲୁମନେ ଆଏବେ କାଏଁ ଦଲ ଦଲ ହେଇ କରି ସହ ସହ ଭାଲୁ.... ରାଏତ ହେଲେନ ରଜାକେ ଲାଗୁଥାଏ ହାଦେ ଭାଲୁମନେ ଆଉଛନ, ହାଦେ ଆସିଗଲେ ......ଜାହା କେ ଦେଖଲେ ରଜା କହୁଥନ କାଏଁ କଥା କିହେ ବୁଝି ନାଇ ପାରୁ ଥାଇ ....

ଇଟା ଗୁଟେ ସପନ ବଲି ନାରାଣ ତିହାଡି କହେସନ ଜେ ହୋ ଇଟା ସପନ ନୁହେସେ; ଆର ଟିକେ କଲେ କଲେ କହେସି ଥନାପତି ବୁଢା, ଇଟା ଗୁଟେ ସତ କଥା ।

ନାରାଣ ତିହାଡି କହେସନ– "ଆମ୍ଭଙ୍କୁ ଯଦି ପ୍ରତେ କରୁନାହଁ, ଯାଇ ପଚାର ଦେବାନ ଫକୀରମୋହନ ସେନାପତିଙ୍କୁ । ଆମ୍ଭେ ଗଂଜାମରୁ ଆଗମନ ବେଳେ ଦଶପଲ୍ଲାରେ ତାଙ୍କୁ ଭେଟିଥିଲୁ । ସେଠାକାର ରାଣୀଙ୍କ ସ୍ୱପ୍ନ ବୃତ୍ତାନ୍ତ କେମନ୍ତ ସତ୍ୟ ହେଲା । ତାଙ୍କୁ ପଚାରିଲେ ସତ୍ୟାସତ୍ୟ ଜାଣିବ ସିନା । ମଣିଷ ଜୀବନ ଆଗତ ଭବିଷ୍ୟତ କେବେ କେବେ ସ୍ୱପ୍ନରେ ଦିଶିଯାଏ , ଯଦ୍ୟପି ତାକୁ ବଦଲେଇବା ଆମ କାହା ହାତରେ ନାହିଁ ।"

ଇ କଥା କହେଲା ବେଲକେ ନାରାଣ ତିହାଡିର ମୁହୁଁ ବଡା ଗୁଲଗୁଲିଆ ଦିସସି । ଆଘର ତେଜ ଆର ନାଇ ଥାଏ; ମୁନୁସର ଭାଗ୍ୟକେ ବଦଲେଇ ନାଇ ହୁଏ, ଜେତେ ପୁଜା ପାଠ କଲେ; ମୁନୁସ କେ ତାର ଦୁଖ ସୁଖ ଭୁଗବାକେ ଏକା ପଡବା, ଦିସି ଜାଏସି ତାଁକର ହାବ ଭାବନୁ ।

କଁଧମନେ ମେଲି କଲେ, ରଜା ଆଦେ କରି ନାଇ ପାରଲେ ତାଁକରନୁ ଖଜନା । ଆଘର ବାଗିର ଡରେଇ ଧମକେଇ ଖଜନା ଆଦେ କରବାର ଆରୁ ନାଇ ହେଲା । ପଟେତ ସାହେବ ପରେ ଭୁସି ଦେଲେ କେନ ଛିନୁ କଁଧର ପେଟେ ଗୁଟେ ଗୁଜେର । କଁଧମନେ ସଁଏତଲା ନୁ ଜରାସିଁଘା ଆସିକରି ପରେ ଦଲ ବାଁଧି କରି ଗଲେ ସଁବଲପୁର । ଛିନୁକେ

ସେନତା ବୁହି ନେଇଥିଲେ ସଁବଲପୁର । ପେଟେ ଗୁଜେର ଲାଗିକରି ବଁଚିଗଲା ଛିନୁ । ହେଲେ, ଗୁରା ସରକାର ପାଟନାକେ କରିଦେଲା କୋଟ ଉଆଡ ।

କିଏ କିଏ କହେସନ– "ଇ ଭିତରେ ଆର ଗୁରଦୁ କଥା ଅଛେ, ପାଟନାର ରଜା ପରେ ସୁରେନଦର ସାଏକେ ସାହାଜ କରୁଥିଲା ଭିତରେ ଭିତରେ । ଧରା ପଡିକରି, ଜରିବାନା ବି ଦେଇଥିଲା ହଜାରେ ଟଁକା ।"

ଆର କିଏ କିଏ କହେସନ– "ନାଇଁ ନାଇଁ ଇ ଥି ଆର ବି କଥା ଅଛେ । ରଜା ପରେ ଧରେଇ ଦେଲା ସୁରେନଦର ସାଏର ଭାଏ ଉଜଲ ସାଏକେ । ହେଲେ , ଗୁରାମନେ ଆର ବିସାସ ନାଇ କଲେ ରଜାକେ । ବାଁଧି ନେଇ କରି ରଖିଛନ ସଁବଲପୁରେ ।"

ଗଲା କୁଡେ ବଛର ହେଲାନ ରଜା ଆମର ଜାଇ ରହୁଛନ ସଁବଲପୁରେ, ନଜରବଁଦି ହେଇ । ଗୁରା ସରକାରର ପଲଟିକାଲ ଏଜେନଟ ସାସନ କରୁଛନ ଆମର ଇ ପାଟନା ରାଏଜକେ । ରାଜଧାନି ବି ଉଠିଗଲା ନ ପାଟନାଗଡୁ ନୁଆଁ ବଲାଁଗେର । କଁଗାଁର ମହାଦେବ ଗୁଡି ଥି ରଜାର ମଁଗଲର ଲାଗି କେତେ ପୁଜା କରିଛନ ନାରାଣ ତିହାଡି ଇ କୁଡେ ବଛରେ ; ସପନର ଅରଥ ନୁରିଛନ, ଜାନିଛନ ବି ହେଲେ ବଦଲେଇ ନି ପାରି ରଜାର ଭାଗ୍ୟକେ ।



# ଅଗାଧୁ ବାବା, ଅଲେଖ ଗୁରୁ

ଅଗାଧୁ ଯେନ ଦିନ ଖଲିଆପାଲି ଗଲା ଆଏଜ ବି ସୋର ପଡ଼ଲେ ତାର ଦିହି ସୁର ସୁରେଇ ଯାଏସି । ସବୁଆଡ଼େ କଁଦାକଟା, ଧାଁ ଧପଡ଼ ସବୁଆଡ଼େ । ଅଗାଧୁ କିଛି ବୁଝି ନାଇଁ ପାରୁଥାଇ । ଏତକି ବେଳେ ପୁଜା ହେବାର କଥା ଗୁରୁ ଘରୁ ବାହାରି କରି ବେଦିନେ ବସବାର କଥା । ତାଁକର ପାଖେ ବସବାର କଥା ମାଁ ଅନ୍ନପୁର୍ଣ୍ଣା । ଆଏଜ ଇ କଁଦାକଟା କାଁ କରି ?

ଇ କଁଦାକଟାକେ ଡ଼ରି କରି ଅଗାଧୁ ଘର ଛାଡ଼ିଥିଲା । ପୁଓ ଝି, ଘର୍ ଦୁଆର୍ ଦୁଇ ଖଁଡ଼ ଗାଁର୍ ଗଁଅତି ଛାଡ଼ିଥିଲା । ଛାଡ଼ିଥିଲା ଜନମ ମାଏଟ, ମାଁ ବୁଆ । ଫେର ସେ କଁଦା କଟା । ଆଗରୁ ବୁଝିନି ପାରୁଥାଇ କାଣା ହେଲା । କିଏ କାଣା ହେଲା । ଇନ ଭଜନ କିରତନ ଲାଗିଥିବାର କଥା । ଧୁନି ମଁଡ଼ପନେ ବସିଥିବାର କଥା ବଡ଼ ବଡ଼ ସାଧୁ । ଆଏଜ ସବୁ ନିୟମ ସୁଇନ । ଅଗାଧୁ ପାଖର ଗଛ ତଲେ ବସି ପଡ଼ଲା । ଘଡ଼େ ବସୁନ ବସୁନ କେତେବେଲେ ସୁଇ ବି ପଡ଼ଲା ।

ଡ଼ାହିମାଲୁ ତୁସରା । ତୁସରାନୁ ମହିମୁଡ଼ା, ତରଭା ଖାରି ଦେଇ କରି ସାରା ରାଏତ ଚାଲିଛେ ଅଗାଧୁ । ଚାଲିଛେ ନାଇଁ ସେ ତ ନରଧିଛେ । ପଛଆଡୁ ଖେଦି ଆନୁଛେ ସଁସାର, ଅଗାଧୁ ନରଧିଛେ । ହାତେ କିଛି ନାଇଁ । ସଁଜ ମୁହେଁ ଖେତକେ ଜାଇଥିଲା ଅଗାଧୁ । ଦିନ ଜାକର ଝାଲ ମଏଲ ଧୁଇ ଦେଇଥିଲା ଚୁଆଁ ନେ ବୁଡି ବୁଡି ଗାଧିକରି । ହେତେ ବେଲେ ସୋର ପଡିଥିଲେ ଅଲେଖଗୁରୁ । ମୁଠେ ଖାଇ କରି ଗାଁ ଖୁଲି ପିଁଢ଼ାନେ ବସିଥିଲା ଅଗାଧୁ । ବସି କରି କଥା ହଉଥିଲା ଆର ଆର ଲୁକର, ସାଁଗେ ।

କେନତାହି ପଲେଇଗଲା ଇ ବାର ଦିନ । ବେଲବୁଡ଼ା ତକ ଯେ ଯାର ଘରକେ ଫିରି ଯାଇଥିଲେ ବଁଧୁ ବାଁଧବ । ଅଗାଧୁ ବି ଘରକେ ଯଉଥିଲା । ବାଟ ଘର ତକ ଯାଇଛେ କି ନାଇଁ,

ଲାଗଲା କିଏ ଯେନତା ଡ଼ାକଲା । ଅଗାଧୁ ଫିରି ଆଏଲା ଗାଁ ଖୁଇଲକେ । ଆର ପଛକେ ନାଇଁ ଦେଖି, ପଛକେ ନାଇଁ ଫିରି । ପଛ ଆଡୁ ଖେଦି ଆନୁଛେ ସଁସାର । ଅଗାଧୁ ଚାଲଲା ଆଗକେ ଆଗକେ ସିଧା ଖଲିଆପାଲି । ହେଲେ ଇଟା କାଣା, ଇନେ ବି ଲୋକ କାଁଦୁଛନ ?

ଅଗାଧୁ ସୁନିଛେ, ବାବା କହେସନ, ସୋନପୁରର ରଜା ନିଲାଦ୍ରି ସିଂ ଥରେ କହେଲେ ଆମର ଗୁରୁ ଭିମଭୋଇ କେ, ତୁଇ ତୋର ଆଁଗ୍ୟା ଦେଖା । କଁଧ ଲୋକ ହେଇକରି ଛତିସ ପାଟକର ପୁଜା ଖଉଛୁ । ଦୁଇ ଦୁଇଟା ମାଏଝି ରଖିଛୁ, କହୁଛୁ ବଡ଼େ ଗୁରୁ । ଆମେ ଦେଖମା ତୋ ପରତିଗ୍ୟାଁ କେତେ । ମହାନଦିର ଖଁଡ଼ି ଧୁନି ଜଲବା, ଧୁନିନୁ ଯଦି ସମିଁ କରି ବାହାରି ଆଏଲୁ, ଠିକ୍ ତୁଇ ଗୁରୁ ।

ଗୁରୁ ବି ବଏଲେ ଧୁନି ଜଲୁ ତ ଥରେ । ଜଲୁ ତ ଥରେ କିଏ ଜଲୁଛେ ଆମେ ନାଇଁ ଦେଖିମା । ହେ ଦିନ ବେଲ ବୁଡ଼ିଆ ଆରତି ହେଲା । ଆରତି ବେଲେ ଗୁରୁ ବସିଥନ୍ ସିଂଘାସନଥି, ଭକତ ମାନେ ଉତରଉଥନ ଆରତି । ଯିଏ ଥିଲେ ସଭେ ଦେଖିଛନ ହେ ଦିନ କାଣା ନାଇଁ ହେଲା । ପହେଲା ସୁଭଲା ସଁ ସଁ ଫଁ ଫଁ ଗୁଟେ ସବଦ, ଦେଖୁନ ଦେଖୁନ ଗୁରୁର ନାକ ବାଟୁ ବାହାରି ପଡ଼ଲା ଛ ହାତ ଲଁବା ନାଗ୍‌ସାଁପ । ଗୁରୁ ହଁସି ହଁସି କେହେଲ, ଯା ପୁତା ଯା ସିଧା ସୋନ୍‌ପୁର୍ । ହାହାକାର୍ ପଡ଼ିଗଲା ସବୁଆଡ଼େ ।

ବାବା କହେସନ୍, "ସୋନପୁରର ଲୋକ ଦେଖିଛନ ସୁବର୍ଣ୍ଣମେରୁ ନେ ପାଲ ପଡ଼ଲା ସାଁପ ଦୁଇଦିନ । ମାହାଦେବକେ ତ ମନେଇ ଦେଲା ହେଲେ ସୁରସୁରି ମାଁ କେତେକେ ଛାଡ଼େ । ରାଜା ଘରକେ ସାଁପ ସମି ନାଇ ପାରୁଥାଇ ।" ମହଲ ର ଚାରିଫାଲେ ଘତ ଜୁହିଁ କରି କିଁଦରୁଥା ସାଁପ । ଦିନେ କାଣା ହେଲା କି ....

ବାବା ଆଏଁଖ ମୁଜି କରି ସୋର ପକାସନ । ଆର ଦମେ ଗଁଜେଇ ଘିଚସନ । ଧିରେ ଧିରେ କୁହୁଲା ଛାଡ଼ସନ, ଆର ଦୁରିଆ କେ ଦେଖସନ । କହେସନ, "ସୁରସୁରି କେ ଦିନେ ସାଁପ ଗୁହାରି କଲା ଗୁରୁ ଆଁଗ୍ୟା ରକ୍ଷା ହେଉ ମାଁ ସୁରସୁରି, ଇ ସଁସାରେ ଧରମ ରକ୍ଷା ହେଉ । ଯୁଗେ ଯୁଗେ ଅଲେଖ ଗୁରୁର କଥା ଥଉ । ରଜା ଘରକେ ମତେ ତୁଇ ବାଟ ଛାଡ଼ି ଦେ ।"

ହେଲେ ସୁରସୁରି କେତେକେ ଛାଡ଼େ । ରଜାଘରର ଦେବତା ରଜାକେ ନାଇଁ ରକ୍ଷା କଲେ ଆର କାହାକେ ରଖବା ? ହେନତେହି ପଲେଇ ଗଲା ଆର ତିନ ଦିନ । ତାହେଁରୁ ସାଁପ୍ ଗୁଟେ ଉପେ ପାଁଚଲା । ଦିନେ ମାଛି ଅଁଧରିଆକେ ମାଛି ରୋପ ଧଏଲା ସାଁପ । ମହଲ ଭିତରକେ ଗଲି ଗଲା ସମକର ଅଜାନତେ । ଆର ଟିକେ ନାଇଁ ଟାକି ରଜା ନିଲାଦ୍ରି ସିଂ କେ ସେ ରାତି ଏକା ଧଁସିଦେଲା ସାଁପ । ରଜା ଥରେକେ ପଟ । ରଜାର ଜୁଏ ଜଲ୍‌ଲା, ଗୁରୁର ଆଗ୍ୟାଁ ରହେଲା । ସେ ଦିନୁ ଉଡ଼ଲା ଅଲେଖ ଗୁରୁ ଭିମ ଭୋଇର ବାନା ।"

ବାବା ତୁମ ପଡ଼ସନ ଟିକେ । ଆର କେତେ ଘାଏ ଖଁଜନି ପିଟସନ, ଯେନତା

ମରଦଲ ବାଜୁଛେ । ଖଁଜନି ପିଟି ପିଟି କହେସନ, "ଗୁରୁ ବ୍ରହ୍ମା ଅଲେଖ ଗୁରୁ ବ୍ରହ୍ମା ଅଲେଖ ।"

ଖଲିଆପାଲି ସେ ଅଲେଖ ଗୁରୁର ଘର, ସେ ଗୁରୁର ସଁସାର । ଇନେ ଦୁଖ ନାଇଁ, ବଁଧନ ନାଇ, ସଁସାର ନାଇଁ । ଇନେ ଅଛନ ଅଲେଖ ନିରନଜନ, ଅଛେ ସୁଖ, ଅଛେ ସବୁବେଲେ ଭଜନ, ଅହରହ ଧୁନି । ଇନେ ଫେର କଁଦାକଟା ଆଏଜ କାଏଁ କରି ?

ଧାଁଧପଡ଼ କରି ଉଠଲା ଅଗାଧୁ । କଁଦା କଁଟାନେ ଅଗାଧୁର୍ ଝୁମ୍ରା ଭାଁଗଲା ବେଲକେ ସମିଆଁ ଦୁଇପହର । ସେ ଆର ଟାକି ନାଇଁ ପାରଲା । ଲୋକବାକ ବି ଗଦା ହେଇଥିଲେ ନ କାହୁଁ କାଣା । ଝନେ ସାଧୁକେ ପଚରାଲା ଅଗାଧୁ; "କାଣା ହେଲା ମହାରାଜ !"

ସାଧୁ ଅଗାଧୁର ମୁହୁଁକେ ଦେଖଲେ କାଣା କେହେଁମି କାଣା କହେମି ହେଲେ । ବଏଲେ, "କାଣା ହେଲା ଆର କାଣା ବଲୁଛ, କହ କାଣା ଆର ନାଇଁ ହେଇ । ଆମକୁ ନିରେଖ କରି ଦେଇ କରି ଗୁରୁ ଚାଲିଗଲେ । ସଁସାରର ଦୁଖ ଆର ସଁଭାଲି ନାଇଁ ପାରଲେ, ସଁସାର ଛାଡ଼ି କରି ଅଲେଖ ମହିମା ପାଖକେ ଗଲେ । ସେନେ ଆମର ଦୁଖର୍ କଥା  ମହିମାକେ କହେବେ । ଦେଖବ ସଁସାରୁ ଦୁଖ୍ ଗଲା ବଲି   ଜାନ । କାଣା ଆର୍ ଦେଖୁଛ ଭାଇ, ଚାଲ ଚାଲ ଗୁରୁକେ ପରେ ଏଛେନ ସମାଧି ଦେମା ।"

ଅଗାଧୁ ସତେ ନିରେଖ ହେଇଗଲା । ଝାଲେ ଗାଧିଗଲା ତାର ଦିହି । ତିନ ଦିନ ତଲେ ଅଗାଧୁକେ ଦସା ଘାଟେ ଭଁଡ଼ାରି ଯେତେବେଲେ ଦାଢ଼ି ବାଲ କାଟି କରି ନାଡୁ କରିଦେଲା ଅଗାଧୁ କେ ଲାଗଲା ତାର ମୁଁଡ଼ ଏକା ନାଇନ । ମୁଁଡ଼ ନାଇନ ବଲି ଚିନ୍ତା ବୁନତା କିଛି ନାଇନ, ସବୁ ସୁଇନ ସୁଇନ । ମାଏଝି ମଲା, ନାଡୁ ମୁଡ଼ ଦେଖିକରି ତାର ପିଲା ଟୁକେଲ, ଦୁଇଟା ବି ପାଖକେ ନାଇଁ ଆଏଲେ । ତିନ ବରସର ରାଏମତି ଆର, ବରସିକିଆ ପରଖିତ କେ ସେ ବି ଦେଖି ନାଇଁ ପାରୁଥାଇ । ଦେଖଲେ, ଏକା ବାହାରି ଅଉଥିଲା ଆଁଖିର ପାଏନ ।

ହୋ ହଲା ଭୁଜି ଭାତ ତକ ଜନା ନାଇଁ ପଡୁଥାଇ କିଛି ବି ।

ଯେ ଯାର ଘରକେ ଫିରିଗଲେ ବଁଧୁ ବାଁଧବ ବାରଦିନ ବେଲବୁଡେ । ଅଗାଧୁ ଗଲା ତାର ଖେତ ଆଡକେ । ମାଛି ଅଁଧରିଆ ହେଲା କେ, ମାଡି ଆଏଲା ଅଁଧାର । ମନେ ଅଁଧାର, ଘରେ ଅଁଧାର, ସଁସାରେ ଏତେ ଅଁଧାର । ପୁରୁବ ଆଡକେ ଦେଖଲା ଅଗାଧୁ, ଜନ ଆଡକେ, ଉକିଆ ଆଡକେ ।  ହେତକି ବେଲେ ସୋର ପଡିଥିଲା ଅଲେଖ ଗୁରୁର କଥା । ଅଗାଧୁକେ କିଏ ଡ଼ାକଲା ଇ ଖଲିଆପାଲିକେ । କାଏଁ କରି ଡ଼ାକଲା ଇ ଖଲିଆପାଲିକେ, ଇ କଁଦାକଟା ଦେଖିବାକେ ?

ଅଗାଧୁ ଜାନି ନାଇଁ ପାରି କେତେବେଲେ ସେ ମେସି ଯାଇଛେ ଭେଲିଥି । ଧୁପ ଦେଇଛେ, ଦିପ ଦେଇଛେ ଗୁରୁକେ । ଗୁଧେଇ ଦେଇଛେ । ସିର ସିରେଇ ଯେଇଛେ ତାର

ଦିହି । କୁଡ଼ିଛେ ମାଏଟ, ଚଉତିଛେ ଇଟା, ସମାଧି ବନେଇଛେ । ଗାଧିଛେ, ପିନ୍ଧିଛେ କାର ଗୁଟେ ଗେରୁଆ ଧୁତି । କେତେବେଲେ ରାଏତ ହେଇଛେ ଅଗାଧୁ ଜାନି ନାଇଁ ପାରି, କିଛି ବଏଲେ କିଛି ବି ।

********

ସାରା ରାଏତ ସୁଇନ, ନିସବଦ । ତିଲେଇମାଲ ର ଜଁଗଲେ ଚେରେ ଚିରଗୁନ ନାଇଁ ରଡ଼ି । ଗାଁ ମୁଁଡ଼ସାନେ ଠିଆ ହେଇକରି ନାଇଁ ରଡ଼ି କୁଲିହା । ଗୁହାଲେ ପୋଢ଼ ଭଁଏସ, ଗାଏ, ଦାମୁର, ଗୋଡ଼ ନାଇଁ ହଲେଇ । କାନ ନାଇଁ ପିଟି । ପୁରଥି ସୁଇ ପଡ଼ିଥିଲା ଖଁଡ଼େ ମାଏଟ ମୁଡ଼ା ହେଇକରି, ସୁଇନ ଥି ଝୁଲି ଝୁଲି ।

ପାହାଁତିଆକେ ସୁଭଲା ଗୁରୁ ବ୍ରହ୍ମ ଅଲେଖ । ତାହେଁରୁ ଚାଲଲା ଧାଁଧପଡ଼ ଜିବନ । ଭଜନ, କିରତନ, ସକାଲ ଦଣ୍ଡବତ, ବେଲବୁଡ଼ାର ଆଲତି । ଲିଭି ଲିଭି ଆଉଥିବାର ଧୁନି ଫେର ଜଲଲା ଦିକ ଦିକ ଦିକ ଦିକ ।

ଅଗାଧୁ ଜାନଲା କେତେବେଲେ ସେ ପିନ୍ଧି ଦେଇଛେ ଖଁଡ଼େ ଗେରୁଆ କପଡ଼ା । ଜାନଲା ଭେଲିଥି ସେ ବି କରୁଛେ ସକାଲ ଦଣ୍ଡବତ୍ ଧୁଇଲ୍ ଥି ସୁଇଛେ, ପଁଗତଥି ବସୁଛେ । ପାଖୁ ଦୁରୁ ଆସିଥିବାର ସାଧୁର ଭିତରେ ସେ ଭି ଝନେ ହେଇଯାଇଛେ । ଅଲେଖ ନିରଞ୍ଜନ, ନିରାକାର କଥା ସୁନି ସୁନି ସେ ବି ସେନତା ହେଇଯାଇଛେ । ଖାଲି ମୁଡ଼େ ଝାଁପୁର ଝାଁପୁର ବାଲ ଦୁରାକ, ଜଟ ନାଇ ହଉଛେ । ହେବା ଯେ ।

ଅଗାଧୁ କେ ଲାଗସି ଇଟାସବୁ ମାୟା । ଇ ତାଲ ପତରର ଛତା, ଇ ଲାଉ ତୁମ୍ବା, ଇ ଗେରୁଆ କପଡ଼ା, ଘର ଘର ବୁଲି କରି ଗୁରୁ ବ୍ରହ୍ମ ଅଲେଖ ଡ଼ାକ । ସବୁ ମାୟା, ଗୁରୁର ବୁଚକା ବୁହି ବୁହି ଧର୍ମର ଗାଁ ଖୁଲି ଗାଁ ଗାଁ ବୁଲବାର ଇଟା ଧରମ ନାଇଁ ସେ । ଇଟା ଧରମର ଖୋଲ । ହେଲେ ସେ ଛାଡ଼ି ନାଇଁ ପାରବାର, ସେ ଦିନ ଯେନତା ଘର ଛାଡ଼ି ଦେଲା ହୁଁଧାପେ । ଇ ମାୟାକେ କାଣା ହେନ୍ତା ଛାଡ଼ି ଦେବା, କିଏ ଡ଼ାକଲେ ତ ଛାଡ଼ି ଦେବା ? କେନକେ ଡ଼ାକଲେ ତ ଛାଡ଼ିହେବା ?

ଅଗାଧୁ ଚମ୍‌କି ପଡୁଥିସି ଘାଏ ଘାଏ, 'କିଏ' ଡ଼ାକୁଛେ କାଏଁ । କିଏ ଉଠିକରି ବସସି ଅଗାଧୁ । ଗୁରୁ ସୁଇଥିସନ । ଜନ ଉକିଆନେ ଦିସୁଥିସି ଗାଁର ଇ ମୁଡ଼ସାନୁ ସେ ମୁଡ଼ସା । ଗାଁ ଖୁଲି ନେ ଧାଡ଼ି ଧାଡ଼ି ସଗଡ଼ । ଉଚା ଉଚା ପିଁଢ଼ା ଦୁଇଫାଲେ । ପିଁଢ଼ାନେ ଜୁହିଥିସି ଅଁଧାର । ଅଗାଧୁ ଚାଲସି ଆଗକେ ଆଗକେ । ଛତା ନାଇଁ ନିଏ, ଲାଉତୁମ୍ବା ନାଇଁ ନିଏ, ସେନେ ଏକା ପଡ଼ିଥିସି ତାର ଝୁଲି ମୁନା ଡ଼ସନା ।

ଅଗାଧୁ ଚାଲସି ଚାଲସି ଯେ ଚାଲସି । ଖେତ ଖଲା ପଡ଼ସି, ଜଁଗଲ ପଡ଼ସି, ସରି ସରି ଆଏସି ବାଟ । ଗାଁ ଆଡୁ ସୁଭସି ପହଁତିଆର ଢେଁକି । କେନ କେନ ଗାଁନେ ମାଁଦଲ,

ପରଭାତି ଘୁଲ ଘୁଲା ବାନ୍ଧି କରି ହାଟକେ ଯଉଥିବାର ଗାଡ଼ିହଲ । ଅଗାଧୁର ଚେତା ଫିରସି । ଅଗାଧୁ ଫିରିଆଏସି ଗାଁ ଆଡ଼େ । ଡ଼ାକସି ଗୁରୁ, ଗୁରୁ, ସକାଲ ହେଲାନ । ଗୁରୁ ବ୍ରହ୍ମ ଅଲେଖ । ଏନତା ଚାଲିଛେ ମାସ ମାସ ଗାଁ ଗାଁ ।

ଦିନେ ରାତି ବରସିଲା ଯେ କାହୁଁ କାଣା । ଧୁକା ପବନ ଆର ଝୋ ଝୋ ପାଏନ । ଅଗାଧୁ କେ ଲାଗଲା ସବୁ ଧୁଇ ହେଇଯିବା ଘର ଦୁଆର, ଖେତ ଖଲା । ଧୁଇ ହେଇଯିବା ଇ ଗଛ ପତର, ପାହାଡ଼ ପରବତ । ସବୁ ଉହୁଲି ଯିବା, ସବୁ ଅଲେଖ ସବୁ ନିରାକାର ହେଇଯିବା ଇ ପୁରଥି । ଗୁରୁ ସୁଇଥିସନ କି କାଣା ଆଗାଧୁ ପଚରାଲା ଗୁରୁ ଗୁରୁ, ଇ ପାଏନ ସବୁ କେନକେ ଯିବା ଗୁରୁ ?

ଅଁଧାରେ ଗୁରୁ ଚମ୍‌କି ପଡ଼ଲେ ବାଗିର ଲାଗଲା ।

'ପାଏନ ? ପାଏନ ସବୁ ସମୁଦରକେ ଏକା ଯିବା । ଯେନୁ ଆସିଥିଲା ସେନେ ଏକା ମିସବା । ଖାଲି ଗୁଁଦଲି ଯିବା କେତେ ଦିନ ଇ ପୁରଥି ଥି, ବଁଧ, କଁଟାଥି, ଢୁଲିଥି, ମଠିଆ ଥି । କିଏ କାଣା ଆମେ ରଖିପାରମା କେଁ ? ସବୁ ସମୁଦର ଏକା ଯିବାରେ ବାବୁ ଆଏଜ ନାଇଁ ହେଲେ କାଲକେ ।'

ଜୋର ସେ ମାରଲା ଗୁଟେ ଘଡ଼ ଘଡ଼ି । ଉକିଆ ହେଇଗଲା ଅଗାଧୁର ମୁହୁଁ, ଉକିଆ ହେଇଗଲେ ଗୁରୁ ବି । ଅଗାଧୁ କେ ଲାଗ୍‌ଲା ଏତକି ଦିନ ସେ ଘାଁଟି ହେଉଥିଲା ଅଁଧାରେ, ଘାଁଟି ହେଉଥିଲା ଇଁ ସଁସାରେ । ସଭେ ଆମେ ଅଲେଖନୁ ଆସିଛୁଁ, ଅଲେଖନେ ଏକା ମିସମା ଆଏଜ ନାଇଁ ହେଲେ କାଲକେ । ଖାଲି ଯେ ଗୁଁଦଲି ଗଲା ଇ ସଁସାରେ ସେ ବି ଅଲେଖନେ ମେସବା ଯେ, ଟିକେ ପଛେ । କେନେ କେତେ ରୁପେ ରହେବା, ବଁଧ, କଁଟାଥି କେତେବେଲେ, ଢୁଲି ମଠିଆ ଥି କେତେବେଲେ । ଖରାନେ ସୁଖବା ମେଘ ହେବା ଫେର ବରସିବା, ଯଦି ପାରବା ଯିବା ସମୁଦର, ନାଇଁ ହେଲେ ଫେର ଥରେ .... ଫେର ଥରେ ।

ସେ ବରସା ରାତିର ସକାଲ ହେଲା । ଆର କେଭେ ଅଁଧାର ନାଇଁ ଲାଗି ଅଗାଧୁ ବାବାକେ । ସବୁ ଆଡ଼େ ପରଛା, ସବୁଆଡ଼େ ଅଲେଖର ଭିନେ ଭିନେ ରୁପ । ସବେ ଅଲେଖ ନୁ ଆସିଛନ ଅଲେଖ ନେ ଏକ ମେସବେ ସଭେ । କିଏ କାଁଦୁଥିଲେ ଅଗାଧୁ ବାବାର ଆଏଁଖନୁ ଝରସି ଆଁଖଲ । କିଏ ଭୁକେ ଥିଲେ ଅଗାଧୁ ବାବାର ପେଟ ପୁଡ଼ି ଯାଏସି ଭୁକେ । କାର ଗୁଡ଼େ କଁଟାଟେ ବାଜଲେ ବାବାର କଲଜାନୁ ଝରସି ରକତ । ଛପନାକୁଟି ଜିବ ଫୁଟେ ସିକାର ଖଁଡ଼େ ହାଡ଼ ସଭେ ଜୁରାଜୁରି ହେଇକରି ଜଗତ । ବାବା ଏକା ଇ ଭାବର ଜଗତ । ଜଗତ ଜେନତା ଇ ବାବା ।

*******

ଅଗାଧୁ ବାବା କହେସନ, "ଜଗତ ନିରାକାର । ଆକର ଏକା ମାୟା ଜଗତକେ ଯେତେ ଦିନ ତମେ ଆକାର ବଲି ଭାବବ ମାୟା ଲାଗିଥିବା । ପିଲା ଝିଲା କୁଟୁମ୍, ଖେତ ଖଳା, ଧନ ଦରବ ସବୁ ଘାଁଟୁଥିବା । ଆକାରର ଗୋଲ ଚକରିଥି ବସିକରି କିଁଦରୁଥିବ ଯେ କିଁଦରୁଥିବ । ଜଗତକେ ଥରେ ନିରାକାର ବଲି ଜାନଲେ ମାୟା ଟୁଟଲା । ହେଲା, ହେଲାରେ ବାବୁ ସବୁ ହେଲା ।"

ନୁଆଁ ବଲାଁଗେରର ଧାଡ଼ି ଧାଡ଼ି ଘର ।

ନୁଆଁ ଇସକୁଲ, ନୁଆଁ ଡ଼ାକତରଖାନା ଚାଏର ଚାଏର ଖୁଟିଆ ବଁଧ । ଛକି ଛକି ରାସତା । ରାସତାର ଦୁଇଫାଲେ ଲିମ ଗଛ, ଆମ ଗଛ, ଜାମ ଗଛ । ମଝିନେ ଚିଡ଼ିଆ ଘର । ଚିଡ଼ିଆ ଘରେ କେତେ ରକମର ଜିବଜଁତୁ । କେତେ ନୁଆଁ ଫୁଲ ଗଛ । ନୁଆଁ ବଲାଁଗେରେ କେତେ ନୁଆଁ ଲୋକ । ନୁଆଁ ନୁଆଁ ବେସ ପୁସାକ ।

କେତେ ଆଏ ଉପେ ବଁଚବାର ଲାଗି, ବଢ଼ବାର ଲାଗି, ରଜାକେ ଭେଟବାର ଲାଗି । କେନେ ଜମି ଟିକେ ପାଏମି ବଲି ରଜା ଘରର ବାଟ ଦୁଆରେ ବସିଛନ ତିନ ଜନ ପରଦେସି । ଗଅଁଡି ଘିନମି ବଲି ଟଁକା ବୁଜଲି ଧରି କରି ଲୁହୁ ଟୁପୁର ହେଉଛନ ଦୁଇ ଲୋକ । ନୁଆଁ ବଲାଁଗେର କେ ଆସଲେ ଏକା ଲାଗସି ଚାଲ ଚାଲ ମାଡ଼ି ଚାଲ, ଯେତେପାରୁଛ ସଁକଲି ଥ, ପଛେ ଗନା ଗୁପା ।

ଅଗାଧୁ ବାବା କହେସନ, "ଛାଡ଼, ଇ ଧୁନିନେ ପଡ଼ଲେ ଯେନତା ଖାର ହେଇଯିବା ମହ ମହ ଫୁଲ, କଁଟା ଝଁଟା, ବଡ଼ ବଡ଼ କାଠଗର, ସମିଆଁ ସବୁକେ ଖାର କରି ଦେବା ଦିନେ । ଯିଏ ଯେତେ ରାଁପି ଚିପରି ହ, ହଉଥ ନିଯେ ।"

ଅଗାଧୁ ବାବା ରାଁପି ଚିପରି ନାଇଁ ହୁଅନ । ଦେସ ଦେସ ବୁଲି ନାଇଁ ଜନ । ଯେ ନିଁଦା କଲେ କରୁ, ଯେ ଗୁନ ଗାଏଲେ ଗଉ ଥଉ, ଅଗାଧୁ ବାବା ନାଇଁ ସୁନନ । ଗାଁକ ରାତେ, ସକାଲ ପାଏଲେ ଆର ଗାଁ ।

ସବୁଠାନେ ଗୁଟେ ବଲି କଥା "ଜଗତ ନିରାକାର । ଡ଼ାକରେ ଭାଇ ଡ଼ାକ, ଅଲେଖ ମହିମା ।" ଖାଏଲେ ଭଲ, ଭୁକେ ସୁଇଲେ ଭଲ । ସିତେ କାକରେ ଖରା ତରାନେ, ମେଘ ବାଦଲେ, ଅଗାଧୁ ବାବା ଚାଲୁଥିସନ ଏକଲା ଗାଁନୁ ଗାଁକେ । ସବୁବେଲେ ମୁହେଁ ଲଟକିଥିସି ଗୁଟେ ଭାବ ଯେନତା ଚିନହିଛନ ତମକୁ । ଜାନିଛନ, କାହିଁ କେତେ ଜନମୁଁ । କିହେ ଅଲଗ ନାଇଁ ସେ, ସଭେ ଗୁଟେ ଏକା ।

ଲୋକ କହେସନ – 'ଅଗାଧୁ ବାବା ଅବତାରି ପୁରୁସ । ଯେନଟା କହେସନ ସେଟା ହେସି ।'

ଲୋକ୍ କହେସନ – 'ବାବାକେ ସପନା ହେଲା ଅଲେଖ ଗୁରୁ ଭିମଭୋଇ ଯେନ

ଦିନ ଦିହି ଛାଡ଼ଲେ, ଜଗତର ଦୁଖ କହେବାର ଲାଗି ଅଲେଖ ପୁରକେ ଗଲେ ବାବାକେ ସପନା ହେଲା ଆସ, ତମେ ଏକା ମତେ ସମାଧି ଦେବ । ତମର ଦିହେ ମୋର କଲା ଛାଡ଼ି ଦେଇକରି ଯିମି । ତମେ ଗାଁ ଗାଁ ବୁଲି ବୁଲି ଧରମର ବାଟ ବତାବ ।'

ଇ କଥା ସୁନଲେ ଅଗାଧୁ ବାବା ରିସମି ହେସନ । କହେସନ : "ଛାଡ଼ ଛାଡ଼, ମୁନୁଷକେ କଥାନି ବନେଇକରି ଅମର କରବ ପୁତେ ।" କିହେ ନାଇ ଛାଡନ କିଛି, ଦୁଇ ତିନ ଦିନ ସେ ଏକ ଛାଡ଼ି ଦେସନ କଥା ବାରତା, ଖିଆ ପିଆ ।

ଗାଁ ନୁ ଗାଁ କେ କଥା ଚହଲି ଯାଏସି । ଅଗାଧୁ ବାବାକେ ଲୋକ ମାଗସନ କେତେ କଥା । ବାବା ବି ପରେ ତାଁକର ଅଜାନତେ ଦେଇଦେସନ କେତେ କାଣା । ଇ ସବୁ କଥା ବିଛି ହେଇ ପଡ଼ିଛେ । କିଏ କେଭେ ବି ନାଇଁ ସଁକଲି ସେ ହଜଲା କଥାନି । ସମିଆଁ ତାହାକେ ହଜେଇ ହଜେଇ ଚାଲିଛେ । ବିଲି ବିହିଲି ଯଉଛେ କେତେକଥା, ହେନତା, ମେସୁଛେ ବି କେତେ ନୂଆ କଥା । ଆଜି ଆମର ଲାଗି ଇ ସବୁ ଗୁଟେ ଗୁଟେ କଥାନି ।

ଏତେ ଗାଁ ଯାଏସନ ଅଗାଧୁ ବାବା ହେଲେ ତେଲ୍ ନଏଦ୍ ନାଇଁ ଡ଼େଗନ ।

କିଏ ପଚରାଲେ କହେସନ, "ଥରେ ଯେନ ସଁସାରର ନଏଦକେ ଡ଼େଗିଛେଁ, ସେ ନଏଦକେ ଆର ଥରେ ନାଇଁ ଡ଼େଗେଁ, ନାଇଁ ଫିରିଯାଏଁ, ସେ ସଁସାରକେ ଆର ଥରେ ।"

ଦିନେ ତୁସରା ନେ ଅଗାଧୁ ବାବାକେ ଭେଟୁନ ଭେଟୁନ ଭେଟି ଦେଲା, ତାଁକର ପିଲାଦିନର ସାଁଗ ବଇସାଖୁ । ବାବା ହଡ଼୍‌ବଡ଼େଇ ଗଲେ, ବଇସାଖୁ ବି । ବାବା ନାଇଁ ପଚ୍‌ରେଇ ତାଁକର ପୁଓ ଝି ର କଥା, ବୁଆ ମାଁର କଥା । ଭାଏ ବହେନର କଥା । ଫଁ କରି ନିସାସ ଟେ ଛାଡ଼ଲେ । କହେଲେ ଗୁରୁ ବ୍ରହ୍ମ ଅଲେଖ ।

ବଇସାଖୁ ବି ଚମକି ପଡ଼ଲା । ଇଟା ସେ ଅଗାଧୁ ? କିଛି କହି ନାଇଁ ପାରଲା ବଇସାଖୁ, ଦେଖି ନାଇଁ ପାରଲା ମୁଁହୁଁକେ ସିଧା କରି, ଗାଁକେ ଫିରିଗଲା ଏକମୁଁହାଁ । ବାବା ବି ତିନ ଦିନ କିଛି ନାଇଁ ଖାଇ । ଚାଲିଛନ ଗାଁ ଗାଁ ବୁଲିଛନ । ଲୋକ ମନକର କଥା ସୁନିଛନ । ବୁଝେଇଛନ ଲୋକକେ ଆର ନିଜର ମନକେ । ଅଲେଖ ମହିମାକେ ଡ଼ାକିଛନ । ହେଲେ ନାଇଁ ଖାଇ କି ନାଇଁ ସୁଇ ।

ଲୋକ କହେସନ, ଅଗାଧୁ ବାବା ଯେଭେ ଦିହି ଛାଡ଼ବେ ନାଇଁ ଖାଇ କରି । ଟିକେ ଟିକେ କଥା କେ ନାଇଁ ଖାଏବାର ଟା କାଣା ? ସରିରକେ ଦୁଖ ଦେବାର ଗୁଟେ ଲବଜ । ବାବା ସବୁ ସୁନସନ କିଛି ନାଇଁ କହନ । ସବୁ ଲୋକକେ ତ ଆର ବୁଝେଇ ନାଇଁ ହୁଏ, ସରିର କାଣା ଆର ସଁସାର କାଣା ? ଇ ସରିର ସଁସାରର । ସଁସାରକେ ଖାଇ ଖାଇ କରି ବନିଛେ ଇ ସରିର । ଖାଏଦ ସାଁଗେ ଏକା ଇ ସଁସାରର ସୁଖଦୁଖ ସରିରକେ ଯାଏସି । ଯେତେଦିନ ଖାଏଦ ଅଛେ, ସରିର ଅଛେ, ସୁଖଦୁଖ ଥିବା ।

ବାବା ନାଇଁ ଖନ । ହସୁଥିସନ, କହୁଥିସନ, ଗୁରୁ ବ୍ରହ୍ମା ଅଲେଖ, ଗୁରୁ ବ୍ରହ୍ମା ଅଲେଖ ।

ଅଲେଖ ଗୁରୁ ଭିମଭୋଇ ଯେନଦିନୁ ସଁସାର ଛାଡ଼ଲେ, ଧରମ ବି ଛାଡ଼ଲା ଇ ସଁସାରକେ । ଧର ଛାଡ଼ଲା ବଲି ପାଏନ ବି ଛାଡ଼ଲା । ଦେଖୁନ ଦେଖୁନ ଆଏଜକେ ଚାଏର, ପାଁଚ ବରସ ହେଇଗଲା ପାଏନ ଆରୁ ବରସୁଛେ ? ବିଁଝାଲ ତି ନେ ବରସିଲେ, କଁଧାନ ଇଲାକା ଥି ନାଇଁ । ଆଏଜ ଇ ଫାଲେ ମରଡ଼ି ତ କାଏଲ ସେ ଫାଲେ । ବାବନ ସାଲୁ ହେଦେ ଛପନ ସାଲ ହେଲା, ଆଘର ବରସା ଆର ଅଛେ ? ଜଗତକେ କଲବଲ କରବାର ଲାଗି ଯାହା, ଇନେ ଭୁରେ ସେନେ ଭୁରେ ।

ଏସୁର ତ ଜିତିଗଲା ସବୁ ବରସ କେ । ନୁଆଁ ଖାଇ ଅଘୋନୁ ପାଏନ ଛାଡ଼ିଛେ ଯେ ଛାଡ଼ିଛେ । ବୁଁଦେ ନାଇଁ, ଥୁପେ ନାଇଁ, ଖରା ଯେ କାହୁଁ କାଣା ।

ବିଁଝାଲତି ନୁ ପାଟନା । ପାଟନାନୁ କଁଧାନ ଇଲାକା । କଁଧାନ ଇଲାକାନୁ ନୁଆଁ ବଲାଁଗେର । ଅଗାଧୁ ବାବା କିଁଦରୁଛନ ଭୁତ ବାଗିର । ଲୋକକୁ କହୁଛନ, "ପାଏନକେ ଛେକ । ଛେକଲେ ସଁସାର ଚଲବା । ସବୁ ନାଇଁ ହେଲେ ପଲେଇ ଯିବା ସମୁଦରକେ । ଇ ପାନିର ଖେଲ ଯେନତା, ଇ ସଁସାରର ଖେଲ ବି ସେନତା ।"

କହେସନ ଆର ହଁସୁଥିସନ । କିଛି ପରଛା କରି ନାଇଁ କହନ ଅଗାଧୁ ବାବା ।

ଲୋକ ପଚରାସନ, "ବାବା କେନତା ସେ କରମୁଁ ?"

ବାବା କହେସନ, "ସଁସାରେ ରହେବ ବଏଲେ ପାଏନକେ ଛେକ । ମୁଁଡ଼ା, କଁଟା, ବଁଧ ଯେତେ ପାରୁଛ ଛେକ, ଛେକ । ଇ ସଁସାରେ ରହେବ ବଏଲେ ।"

********

ଲୁଇସିଂଗାନୁ ଫିରିକରି ଅଗାଧୁ ବାବା ବସିଛନ ଇ ଲିମ ଗଛ ତଲେ । ତିନ ଦିନ ହେଲାନ ଉଠବାର ନାଇଁ, କାହିଁ ଯିବାର ନାହିଁ । ଲୋକ ଭାବୁଛନ ଅଲେଖ ମହିମାକେ ପାଏନ ଲାଗି ଗୁହାରି କରୁଥିବେ । କଥା ନାଇଁ, ବାରତା ନାଇଁ, ଅଗାଧୁ ବାବା ବସିଛନ, କରଗାଁ କଁଟାର ଇ ଲିମ ଗଛ ତଲେ ।

ପାଖେ ଡ଼ାକତରଖାନା, ପାଖେ ସିବ ମଁଦିର, ପାଖେ ଇସକୁଲ, ପାଖେ ଅରନ ଛତର । ଆଘେ ରଜା ଘରକେ ବାଟ ଗୁଟେ ଫାଲେ । ଆଘେ ସୋନପୁରକେ ବାଟ ଗୁଟେ ଫାଲେ । ଅଗାଧୁ ବାବା ଉଠବାର ନାଇଁ, ଉନଡ଼ିବାର ନାଇଁ ବସିଛନ ଯେ ବସିଛନ । କେତେବେଲେ କେନତା ତାଁକର ମୁଡ଼ ଉପରେ ପଡୁଛେ ଗୁଟେ ଗୁଟେ ଲିମ ଫୁଲ । ଅଗାଧୁ ବାବାର ଲଁମା ଜଟନେ ଇ ଲିମ ଫୁଲମନେ ଲଟକି ପଡ଼ିଛନ, ଗୁଟେ ଗୁଟେ ତରା ବାଗିର ।

ଗଛେ ହେଲେ ଲିମ ଫୁଲ ଆର ଜହ କାଇଛେ । ସବୁ ଉରଡି ନେଇଛନ ଇ ଲୋକ

ମନେ । ମଫସଲ ନୁ ଅରନ ଛତର ନାଁ ସୁନି କରି ଲୋକ ଆସୁଛନ ଚାଁଟି ଧାର ବାଗିର । ଗାଁ ମନକୁ ଖାଏବାକେ ନାଇଁ, ଧାନ ନାଇଁ, ଚାଉଲ ନାଇଁ, ଗୁନ୍‌ଜି, ମଡ଼ିଆ, କୁଦୋ କିଛି ନାଇଁ । ଆମ ଏସୁର ଆସିଛେ ଯେ, ଆମ ମହୁଲ, ଚାଁର ଖାଇ କରି କେତେ ଦିନ ବଁଚି ରହେବା ମୁନୁସର ଜିବନ । ସଭେ ଭାତ ମୁଠେ ଲାଗି ଧଉଁଛନ ନୁଆଁ ବଲାଁଗେର ।

ଦିନ ସାରା ଖରା । କଚରି ନେ ଠନ ଠନ ବାର ବାଜବା ପହେଲା । ଟିକେ ଗଲେ ବାଜବା ଘଁଟ । ଘଁଟ ବାଜଲେ ଧାଡ଼ି ହେଇ ବସବ, ଚିଡ଼ିଆ ଘରୁ ସିବ ମଁଦିର ତକ ଦୁଇ ଫାଲେ । ରଁଧନିଆଁ ମନେ ପର୍‌ସି ଦେବେ ଯେ ଯାହା ଖଅ । ଭାତ୍, ଦାଏଲ୍, କେତେ ଖଉଛ ଖଅ ।

ଅଗାଧୁ ବାବା ହେତକି ବେଲେ ଥରେ ଇଆଡ଼େ ସେଆଡ଼େ ଦେଖସନ । ମୁଁଡ଼ ଉପରର ସୁରଜକେ ଦେଖସନ ନିଘାକରି । ପୁଟ ପୁଟ କରି କାଣା କହୁଥିସନ ମନେ ମନେ । ଆଏଁଖ ନୁ ଆଁଖିଲ ଝରୁଥିସି ଝର୍‌ନା ବାଗିର । ଅଗାଧୁ ବାବା ନାଇଁ ଉଠନ, କାହିଁ ନାଇଁ ଜନ, ବସିଥିସନ ସେନତା ଏକା । ସକାଲ ଦଣ୍ଡବତ ନାଇଁ କରନ, ସଁଧିଆ ଦଣ୍ଡବତ ନାଇଁ କରନ, ଗୁରୁ ବ୍ରହ୍ମା ଅଲେଖ ନାଇଁ ଡ଼ାକନ, ବସିଥିସନ ଯେ ବସିଥିସନ ।

ଖାଇ କରି କେତେ ଲୋକ ଉଠି ନାଇଁ ପାରନ । ସେ ଖରାନେ ଏକା ସେନତା ବସିଥିସନ । ବସୁନ ବସୁନ କେତେବେଲେ ଉନଡ଼ି ପଡ଼ସନ କିହେ ନାଇଁ ଜାନନ । ବେଲ ବୁଡ଼ଲେ ଲଖମି ଜୁରେ ଫିକି ଆଏସନ ସେମାନକୁ ଚିନହାର ଜନାର ଲୋକ । ନାଇଁ ହେଲେ ସେନତା ସୁଇଥିସନ ଦିନ ଦିନ ରାଏତ ରାଏତ ।

ଗାଁର ଲୋକ ମନେ ବୁଲୁଥିସନ ନୁଆଁ ବଲାଁଗେରର ଇ ଖୁଇଲ ସେ ଖୁଇଲ । ଦୁହୁରି ଭାଁଗଲା ବାଗିର ବାଟ । ଚାଁର ଖୁଟିଆ ବଁଧ, ଧାଡ଼ିଧାଡ଼ି ଘର, ଇ ଆମ ଗଛ ତଲ, ସେ ଲିମ ଗଛ ତଲ, ବେଲବୁଡ଼ାକେ ଆର ଥରେ ଘଁଟ ବାଜଲା ତକ । ଘଁଟ ବାଜଲେ କଲ ନାଇଁ, କାଲ ନାଇଁ ଧାଡ଼ି ହେଇକରି ଫେର ବସସନ । ରଁଧନିଆଁମନେ ପରସି ଦେସନ, ଯେ ଯାହା ଖଅ । ରଡ଼ା ଗଗା କଲେ ଅଛେ ପୁଲିସ, ସବୁ ତୁମ ତାମ ଖଅ ପିଲେ ଖଅ ।

ଅଗାଧୁ ବାବା ବସିଥିସନ, ଦେଖୁଥିସନ ତାଁକର ଚାରିଫାଲେ ଲୋକ ସବୁ ସୁଇଛନ । କାହାକେ ଯେନତା ଦଣ୍ଡବତ କରୁଛନ ଇ ଲୋକ ମାନେ । ଆଁଗ୍ୟା ଆସଲା ତକ ସୁଇ ସୁଇ ଟାକିଛନ । ରାଏତ ବଢୁଥିସି । କେନତା ଗୁଟେ ବିଚକିଟିଆ ଗଁଧି ଲଖମି ଯୋର ଆଡୁ ଘାଏ ଘାଏ ଆଏସି । ଘିଚି ନଉଥିସି ଗୁଟେ ଗୁଟେ କରି ଇ ସୁଇଥିବାର ଲୋକମନକୁ କେନ କେ କିଏ ଜାନେ ?

ଆଘେ ଚଇତ ପୁନିର ଜନ । ଅଗାଧୁ ବାବା ଆଏଜ ଉଠଲେ କେତେ ଦିନୁଁ । ଚାଲଲେ, ଜନ ଆଡକେ ସିଧା ସିଧା । ତାଁକୁ ଲାଗୁଥାଏ ଜନ ବି ତାଁକର ଆଡ଼କେ ଆସୁଛେ । ପୁରୁବ ଆଡୁ ଆସୁଛେ ଜନ ବାବା ଯଉଛନ ପୁରୁବ ମୁହାଁ ।

ଲୋକ କହେସନ : "ବାବା ଖଲିଆପାଲି ପୁହୁଁଚି ଗଲେ ସେ ରାତିନ, ଫିଙ୍କି ଦେଲେ ଗେରୁଆ କପଡା ।"

ଲୋକ କହେସନ : "ବାବା ସେ ରାତିନ ପୁହୁଁଚି ଗଲେ ଗୋଲେକ ଧାମ, ମୁନସର ଦୁଖ ପ୍ରଭୁକେ ଜନାବା କେ ।"

ଲୋକ କହେସନ: "ବାବା ଆର, କେନ ପୁହୁଁଚି ପାରଲେ କେନକେ ?"



# ଅଚିନହା ଆକାସର ସେମେଲ ମଁଜି

ସକାଲ ହେଲେନ କହଁରି ଜାଏସି ବାସୁଦେବର ଘର ।

କେଭେ କରପୁର ତ କେଭେ ଚଁଦନ, କେଭେ ଲବଁଗ ତ କେଭେ ଜାଇଫଲ ବାସନା ଥି । ଥରେ ଥରେ ମେସା ମେସି ଗୁଟେ ମହମହ କହଁରନେ ଉକୁବୁକୁ ହେଇ ଜାଏସି ଇ ପରା । ପରା ପାଟକର ଲୋକ ତ ପଚରାସନ: "ହଏ ଗୋ, ଇଟା କାଏଁ ଉସୋ ?" ଜମୁନା ବୁପରି କିଛି ନାଇଁ ଜାନେ । କହେସି: "ସକାଲୁ ବାଟୁଛେ ଜେ ବାଟୁଛେ ଜେ ବାଟୁଛେ, ମରବାର ନାଇ ମୁଟେ, ଇଟା କାଏଁ ଚେର କିଏ ଜାନେ ରେ ବୁଆ ? ସେ ଥି ଖାଲି ମିସିଛେ ଆର କେତେଟା ଛାଲି ଆରୁ ଫଲ, କେନୁ ଘିନି ଆନି କରି ମିସେଇଛନ ବଇଦ ।"

ଜମୁନା କେ ଏକା ସଭେ ପଚରାସନ । ଜମୁନା ବି ଜାହା ଜାନିଥିସି କହିଦେସି ସତ ସତ । ପାଁଚଟା ଛୁଆ ପୁତାର ଜଁଜାଲ, ଘରର ସବୁ କାମ, ତାହେରୁ ଇ ଉସୋ ବଟା, ଉସୋ କୁଟା ଆର ଉସୋ ସିଝା । ଇ ସବୁ କଲାବେଲକେ ତାର ବେଲ କାହିଁ ?

ବାସୁଦେବର ବି ବେଲ କାହିଁ ସବୁ କଥା ସମକୁ ବୁଝାବାକେ ? ଜମୁନା ତ ପାଠ ନାଇଁ ପଢି ଜେ ବହି ପଢି କର ସବୁ ଜାନବା । ଜମୁନା ଲୋକକୁ କଥା ପଡଲେ ଖାଲି ଦେଖାସି ବଡ ବଡ ପାଁଚଟା ସିଲ, ସିଲର ମଝିନେ ଉସୋ ବାଟି ବାଟ ହେଇଥିବାର ପସେ ପସେ ଖାଲ । ଦେଖାସି, ମୁସା ଲେଁଡି, ଛେଲ ଲେଁଡି, ଖରା ଲେଁଡି,ବରହା ଲେଁଡି ବାଗିର ଘରର ଛାନି ସୁଖୁ ଥିବାର ପରଲା ପରଲା ଉସୋ ।

ଜମୁନା ଇ କାମନେ ବିତବିତା ହଉଥିସି, କାଁଦି ପକାସି ବି ଘାଏ ଘାଏ । ହେଲେ, କରୁ ଥିସି ନ ଅଥକ । ଇଟା କାଲକେ ଜିବା ଉଲୁନଡା, ଇଟା ଦୁଇ ଦିନ ଗଲେ ଜିବା

ରାମପୁର । ମଲୁ ଜୁଗିଥିବା କେତେ ଆସେ, ଜୁଗିଥିବେ ଘରର ସବୁ ଲୋକ, ବଁଧୁ ବାଁଧବ । ପାଁଚ ଦସ କୋସ ବାଟ ଚାଲି ଚାଲି ଆସି କରି ଫିରି ଗଲେ, କେନତା ହେବା ଲୁକର ମନ, କେନତା ହେବା ସେ ମଲୁର ଜିବନ ? ହେଥିର ଲାଗି ଜମୁନା ମରି ପଡି କରି କୁଟୁଥିସି, ବାଟୁଥିସି, ସିଝଉଥିସି, ସୁଖଉଥିସି ଇ ଉସୋ ସବୁ ।

ସନପୁରୁ କି ବରଗଡୁ ବାସୁଦେବ ଘିନି କରି ଆନସନ ଜେନଟା ଇନେ ନାଇଁ ମିଲେ, ଚେର, ମୁଳ,ପତର. ଫଲ ଆର କେତେ ରକମର ଗୁଁଡ । ସାଁଗେ ଝନେ ଦୁଇ ଝନକେ ନେଇ କରି ଝାର ଜଁଗଲୁ ନୁରି ଖୁଜି ଆନସନ ପତର,ଫୁଲ, ଫଲ, ଛାଲି ଆର ଚେର । ସବୁ ଅଲଗ ଅଲଗ ରଖିଥିସନ ମଠିଆନେ, ଭୁଗାନେ, ଟୁପାନେ,ଚାଁଘରିନେ, ପରଲାନେ ।

ନାପି ଜୁଖି କରି ଜମୁନାକେ ଦେଇ ଦେଇକରି ବଇବ କହେସନ, କେନଟା ହେବା ଗୁଁଡ, କେନଟା ହେବା ମୋଦକ, କେନଟା ହେବା ତଇଲ, କେନଟା ହେବା କୁଆଥ । ସବୁ ଅଲଗ ଅଲଗ, ସବୁ ଅଲଗ ଅଲଗ ପରଲାଥି । ବଇଦ କେତେବେଲେ ବି ଘରେ ନାଇଁ ଥାନ । ଜମୁନା ଥରେ ଥରେ କହେସି: "ଖଟକେ ତ ଡେରି କରି ଜଉଛ, ପେଟକେ ବି ଡେରି ଦେଇ ହେବା କାଏଁ ? ଆମର ଇ ପାଁଚ ପରାନି କୁଟୁମ ତ କାଣା ଖାଏମୁଁ , ଇଟା ତ ଟିକେ ଭାବ ?"

ସକାଲ ହେଲେ ନ ଜମୁନାର ଲାଗିଥିସି, କୁଟା, ବଟା, ସିଝା, ଫୁଟା । ପରା ମହକି ଜଉଥିସି ତାର କଁହରେ, ସକାଲ ହେଲେ ନ ।

*******

ସେମେଲ ଗଛର ଫଲ ସବୁ ବତରି କରି କଲା ପଡି ଆଏଲାନ । ଝଡି ଗଲା ନ ସବୁ ଫଲସା ଫୁଲ,ଗଛେ ଏଭେ ତାଲି ପିଟୁଛେ ଫଲ । ଗୁଟେ ଗୁଟେ ଗଛ ତଲୁ ସାଁଆଁଟି ନେଲେ ହେବା ଭୁଗା ଭୁଗା ଫୁଲ । ହେଲେ, ଇ ସବୁ ରଖବା କେ ଘର କାହିଁ ? ସାତ ପରାନି କୁଟୁମକର ଘର ବଲି ଚାଏର ବଖରା ।

ବାଟର ଘରେ, ଗଲା ଆଏଲା ଲୋକବାକ ବସସନ । ଢବାଘରେ ତ ସମକୁ ଠାନ ନାଇ ହୁଏ ବଲି ବଡ ଦୁଇ ଟୁକେଲ ସୁଇସନ ପାଖର ଘରେ । ଆର ବଖରେ ଘରେ ରହେସି ଉସୋ କସା । ପାଖର ଢେଁକିସାଲେ ବି ଉସୋ ରହେସି ଇନେ ସେନେ । ରଁଧା ଘରେ ତ ଜମୁନା ରଖେଇ ନାଇ ଦିଏ କିଛି ବି । ଏତକି ଫଲସା ଫୁଲ, ଇ ବେଲ, ଇ ସେମେଲ ଫଲ ରଖବାକେ ଠାନ କାହିଁ ?

ବାସୁଦେବର ଆଏଁଖ, କିଁଦୁରୁଥିସି ସବୁବେଲେ, ସବୁଆଡେ । ସୋର ଥିସି କେନ ଗଛ କେନେ, କେନ ଗଛେ ଅଛେ ମଦାଁଗ, ତଲେ କେନ ଲଟା, କେନ ଡାଲେ କେନ ଫୁଲ ଫଲ । ବଇଦର ଆଁଖି ଜଗତ ଉସୋମଏ । ବାସୁଦେବ ହଁସସି ନିଜକେ ନିଜେ, ଭାବସି ରୋଗମଏ ବି । ଇ ଲୋକଟା ବାତୁଆ ନୁ ଆରମ କରି କରି, ଲୋକ କେ ଦେଖଲେ ଏକା

ବାସୁଦେବ କେ ଦିସି ଜାଏସି , ଇ କେଭେ ମରବା ତକ । ଆହା, ଘଡେ ଛନେ କର ଇ ଆମର ଦେଖା ଚୁହାଁ, ଆର ଇ ତାକେ ଭେଟମି କି ନାଇ, କିଏ ଜାନେ .... ବାସୁଦେବର ଆଏଁଖ, କିଁଦୁରୁଥିସି ସବୁବେଲେ, ସବୁଆଡେ ।

ବେଲ ବୁଡି ବୁଡି ଆଇଥିଲାନ । ବାହାରେ ବୁଲୁଥିଲା, ଲାଲ ଖରା ସାଁଗେ ହୁର ହୁରିଆ ଧୁକା । ଉସୁମ ଉସୁମ ପାଏନନୁ ବାହାରି ଆସୁଥିବାର ବାସୁଦେବର ଦିହି କଁଟା କଁଟା ହେଇଗଲା । ଉସୋ ଖୁଜି ନୁରି କରି ଫିରଲେ, କାଏଁ ଖରା କାଏଁ ସିତ ଗାଧବାରଟା ତାର ଅଭିଆସ । ଗାମଛା ପାଲଟୁ ପାଲଟୁ ଦେଖଲା, ଆଘର ସେମେଲ ଗଛର ଗୁଟେ ସେମେଲ ଫଲୁ ଫାଟି କରି ଉଡି ଜଉଛେ ରୁଆ ।

ଗୋଲ ଗୋଲ ସହ ସହ ରୁଆ ଧୁକାନେ ଉଡି ଜଉଛନ ଉତର ଆଡୁ ଦଖିନକେ ମେଘ ବାଗିର । କେତେ ଦୁର ସଭେ ଏକା ସାଁଗେ ଜିବେ, କିଏ କେନେ ପଡବେ କିଏ ଜାନେ ।

ବଁଧୁଁ ଗାଁ ଆଡକେ ମୁହାଁଲା ବାସୁଦେବ । ବାଟର ରୁଗୁଡି ଚାବୁଥିଲା ଉଦା ଗୋଡକେ । ମୁଡେ ବି ରଟରଟ ଚାବୁଥିଲା, ଉଡୁଥିବାର ସେମେଲ ରୁଆ ।

ମୁହୁଁ ଅଁଧାରର ପବନେ ବାସୁଦେବ ପହଁରି ଜଉଥିଲା ତାର ଘର ଆଡକେ । ବୋଇରାନି ନୁଁ ଆସକା, ଆସକାନୁ  ବିନକା ପହଁରି ବୁଲୁଥିଲା ବାସୁଦେବର ମନ । ଉପରକେ ଦେଖୁଥିଲା ଘାଏ ଘାଏ ତାର ସାଁଗେ ଚାଲୁଥିବାର ଇ ସେମେଲ ରୁଆମନକୁ । କେନେ କେନେ ରହିଗଲେ କାଏଁ, ଜିଏ ଜେନେ ରହେଲେ, ସେଟା ଏକା ତାର ଘର ।

ଅଁଧାର ହେଇଥିଲାନ,ବାସୁଦେବ ବାଟର ଘରକେ ଆଏଲା ବେଲକେ ଜମୁନା ତୁଲସି ଚଁଉରାଥି ଦଉଥିଲା ଦିପ । ଜମୁନାର ଗୁରା ମୁହୁଁ ଦେବି ବାଗିର ଝଟ ଝଟ ଦିଶୁଥଲା ଉକିଆଥି ।

********

ଜମୁନାର ସୋର ପଡସି ଘାଏ ଘାଏ ଆଘର କଥା ।

ଲୋକ କହୁଥନ, ଛ ମାସ ହେଲା ସତ୍ୟବାଦି ତିହାଡି ଖଟେ ପଡିଛନ, କେତେ ବେଲେ କାଣା । ଉରଲେ ଗାଁର ଲୋକ ଆସ ଛାଡି ଦେଲେନ । ସବୁ ଭରସା ଭଗବାନ ଉପରେ । ବାର ବରସର ପୁଓ ଭାଗରଥି ଭାଗବତ ପଢୁଛେ, ଗୋଡ ଆଡେ ବର୍ସି କରି । ସାତ ବରସର ସୁଭଦରା ମୁଡ ଆଡେ ବସିଛେ । ଦୁଇ ଦିନ ହେଲା, ତିହାଡିର ହେତ ଚେତ ନାଇଁ ।

'ସୁଭଦରା ଇ ଆଡେ ଆ, କହେଲିଁ ପରେ ମୁଡ ଆଡେ ନାଇଁ ବସନ'– କାଁଦି କାଁଦି କହେଲା ଜମୁନା ।

ଜମୁନା ଜାନୁଛେ କେଡେ ବିପଦ ଆସୁଛେ ଇ ଘରକେ । ନାନି ମନେ ଜେ ଜାର ସାସ ଘରେ ସୁଖେ ଅଛନ, ସୁଖେ ରହେବେ । ମାଁ, ଭାଗରଥି,ସୁଭଦରା ଆର ସେ – ଇ

ଚାଏର ଝନେ, ସଁସାର ଚଲବା କେନତା କରି । ଜମୁନା କାଁଦୁଛେ ହେକେଇ ହେକେଇ ସବୁବେଲେ କେତେ ଦିନୁ । ଥରେ ରଁଧାଘରେ, ଥରେ ବାଟ ଘରେ ବୁଲି ବୁଲି ଲୁକି ଲୁକି କାଁଦୁଛେ ଜମୁନା ।

'ଜମନା, ଏ.. ଜମନା'– କାକାର ଡାକଥି ଚମକି ପଡସି ଜମୁନା ।

ସାଁଗେ କାହାକେ ଧରି କରି ଘର ଭିତରକେ ଆଇଛନ ସାନ କାକା । ମୁଡେ ଝୁପୁରୁ ଝୁପୁର ବାଲ, ମୁହଁ ସାରା ଦାଢି ମେଛା ପୁରତୁନ । କପାଲେ ସିଁଦୁର ଟିକା । ଇ ଲୋକ ତ ଆମର ଇନର ନାଇ ସେ । ଜମୁନା ଢବା ଘରକେ ପଲାସି ଗଦ ବଦ ।

କାକା କହେସନ : "ଜମନା ଭାଉଜ କେ ଟିକେ ପଠା ତ' । ଗିତ ବଁଦ କରସି ଭାଗିରଥି ।

ଭାଗରଥି କେ କାକା କହେସନ: "ଜା ତ ରେ ବାବୁ ଖଟଲି ଟେ ଆନବୁ ବଇଦ ବସବେ ।"

ଜମୁନା ଢବାଘରୁ ଦେଖୁଥିସି – ଲୋକଟା ବାପାର ନାଡି ଦେଖୁଛେ, ଛାତିନେ, ପେଟେ, କପାଲେ ହାତ ଦେଇ କରି ଆଏଖ ବଁଦ କରି ରହୁଛେ କେତେ ଘଡି । ଆଏଖ ବଁଦ କରି ଜୋରସେ ନିସାସ ନଉଛେ, ଜେନତା ସୁଁନଘୁଛେ ବାପାକେ । ଆଏଖ ବଁଦ କରି କହୁଛେ କାଣା କାଣା, ମନକେ ମନ । ମୁନାନୁ ବାହାର କରୁଛେ କାଠର ଡବାସବୁ, ଡବାନୁ କାଢୁଛେ ଦୁଇ ତିନଟା ଭିନ ଭିନ ବଟି । ହଲଦି କାଠୁଆ ବାଗିର କାଣା ଗୁଟେନ ବାହାର କରୁଛେ ମୁନାନୁ । ବଟି ମାନକୁ ସେଥି ରଖି କରି ମଝିର ଆଁଗଠି ନେ ଘସୁଛେ ସେଥି । ଆମର ତୁଲସି ଚଁଉରାନୁ ତୁଲି ନଉଛେ କେତେଟା ପତର । ହାତେ ଦଲି କରି ତାର ରସ ସେଥି ମିସଉଛେ । ଆରେ.. ଆରେ.. ବାପାର ନାକେ କାଣା ରୁକି ଦଉଛେ ସେ ରସ ? ବାପା ଘଟ ଘଟ କରୁଛନ, ଛାଟି ପିଟି ହଉଛନ ..

ଜମୁନା ଆଇଛେ ଢବାଘରୁ ବାପା ବାପା ରଡି ରଡି । ହାତ ଗୋଡ,ଛାତିକେ ଆଉସି ଦେଇଛେ ଜମୁନା । ଟିକେ ଗଲା କେ ତିହାଡି ଦେଖଲେ ମୁଟ ମୁଟ । ଫଁ କରି ନିସାସ ଛାଡଲେ ବଇଦ, ବସଲେ ପାଖର ଖଟଲି ନେ ।

କହେଲେ: "ଆଉ କିଛି ହେବାର ନାଇ, ଅଉସଦଟା ସମାନେ କାଟୁ କରିବ । ଆମ ସହ କିଏ ଜଣେ ବିନିକା ଆସ ହେ, ଅଉସଦ ନେଇ ଆସିବ, ଦସ ଦିନର ଅଉସଦ ଖାଇଲେ, ରୋଗ ସମାନେ ପଳେବ । ହଁ, ଆଉ ଗୋଟେ କଥା, ଝିଅଟିର ନାମ କ୍ୟଣ କହିଲ କି ହେ ?"

କାକା କହେଲ : "ଜମନା"

ବଇଦ ହେ ଦିନ ହଁସି ହଁସି କହିଥିଲେ: "ହଁ କହ ନା କହ, ଜମ ନାଁ ଟା ଘରେ ଡାକିବା ଭଲ ନୁହଁ । ତାକୁ ଜମୁନା ବୋଲି ଡାକ ହେ, ଦେଖିବ, ରୋଗ ତମର ଘର ପାଖ ମାଡିବ ନାଇଁ ।'

ସେ ଦିନର କଥା ଏଭେ ସୋର ପଡଲେ, ଜମୁନା ହସସି ମନେ ମନେ । ହେ ଦିନୁ ତାର ନାଁ ହେଇ ଗଲା ଜମୁନା ।

********

ମାଛି ଅଁଧରିଆ ଡଁଗାନୁ ଉତରିଲା ବେଲକେ ବାସୁଦେବ ସବୁ ଜିନିସ ଆନିନାଇଁ ପାରନ । ପ୍ରସାରୁଣି ପତ୍ର, ବାସଁଗ ଆର ନିରଗୁନି ତ ରହିଛେ ଚିଡିମନକେ,ସତାବରି, କେଉ ଆର ଭମରମାରି ବଁଧାହେଇଛେ ଅଲଗ ଅଲଗ ବସତାନେ । କୁମଟିପଡା ଭଡା ଘରକେ ନେବାକେ ପଡବା ଇ ସବୁ । କେନେ ରଖବେ ଇ ସବୁ, ସେ ନିଜେ ବି ନାଇଁ ଜାନି ।

ସକାଲୁ ସଁଜ ତକ ନାଇଁ ଥାକବାର ବାସୁଦେବ । ଇନ କେ ଜ, ସେନ କେ ଜ । ଇ ଉସୋ କୁଟ, ସେ ଉସୋ ରାଁଧ । ସକାଲ ହେଲେ ନ, ଗୁଟେ ଗୁଟେ ନୁଆଁ ମାଟି କୁଢିଥି ପିସାବ ଧରି କରି ହାଜର ପାଁଚ ଦସ ଲୋକ । ରାଏସ ତେଲ ପକେଇ କରି ତାହାକେ ପରିଖା କର, ଠିକ କର ଉସୋ, ବାସୁଦେବ ଧଁଦି ହେଇ ଗଲେ ନ ଇ ବରସେ ଭିତରେ ବିନକାନେ । ରାତି ବିକାଲି ବି ଜିବାକେ ପଡସି ଗାଁ ଗାଁ ।

ବାସୁଦେବ ଖାଇ ନାଇ ପାରନ, ସୁଇ ନାଇ ପାରନ । ପଛକେ ବି ଫିରି ନାଇ ପାରନ । ବାସୁଦେବ କେ ଲାଗସି ସଭେ ତାଁକର ମା ବୁଆ । ରୁଗେ ଦୁଖେ ପଡିଥିବାର ଇ ମୁନୁସର ଜାଏତ ନାଇଁ, ଠାନ ନାଇଁ, ଭାସା ନାଇଁ, ଧରମ ନାଇଁ । ଜଦି ଉସୋ ଟିକେ ଦେଲେ ବଁଚି ଜଉଛେ ଗୁଟେ ଜିବନ, ଭାଗି ଜଉଛେ ମୁନୁସର ଦୁଖ, ଇଟା କେଡେ ଟେ କଥା । ରାଏତ ରାଏତ ରହିଜାଏସନ ରୁଗିର ଘରେ, ଭୁଜା,ଚୁରା,ଜାହା ଦିଅ ସେଟା ଏକା ଖାଇ କରି ।

ଥରେ ଥରେ ଲାଗସି,ଡଁଗାନେ ବସି କରି ଫିରି ଜାଏତି କାଏଁ ରାତା ରାତି । ଉହୁଲି ଜାଏତି ବାଁକି, ବାଁକିନୁ ଖୁରଧା, ଖୁରଧାନୁ ନୁଆଁ ରେଲଗାଡିନେ ରଁଭା । ରଁଭାନୁ ବୋଇରାଣି କେତେ ବାଟ । ଫେର ସୋର ପଡସି ସେ ଦିନ ରାତିର କଥା:

“ଲହ ଲହ ଦୀପ ଶିଖାର ସୀମିତ ଆଲୁଅରେ ଅବାସ୍ତବ ଓ ଅନ୍ଧାରୁଆ ଲାଗୁଥିଲା,ବୋଇରାଣିର ମହାମାୟା ମ ିର । ଗୋଟିଏ ବୋଲି ଜାଗର, ସବୁ ଆଡେ ଖାଲି କୁହୁ କୁହୁ ଶୂନସାନ ଅନ୍ଧାର । ଦେବୀ ମୂର୍ତିର ଆଗରେ ବସିଥିଲେ ନନା । ଗୁଣା ଗୁଣି କରୁଥିଲେ କେଉଁ ଏକ ବୀଜ ମନ୍ତ୍ର ।

‘ନନା ଆମେ କେତେ ବେଳେ ଫେରିବା ?’

ସି ୁର ମଖା କପାଳର ତଳେ ଦୁଇଟି ଲାଲ ରଙ୍ଗର ଆଖି । ମତେ ଜାଳିଦେବା ପାଇଁ ଯେମିତି ଜଳି ଉଠିଲା । ପୁଣି ଥରେ ପଛକୁ ଘୁଞ୍ଚି ଆସିଲି, ଫେରି ଆସିଲି,ପୁଣିଥରେ ମୋର ବସିଥିବା ଦୂର କାନ୍ଥର କଡକୁ । ସକାଳେ ଆସ୍କାରୁ ଚାଲି ଚାଲି ଆସିଥଲି ବୋଇରାଣି ବୋଉର

ବେମାର କଥା ଶୁଣି । ଗୁରୁ କେଶବ ଶତପଥୀଙ୍କଠାରୁ ଔଷଧ ବି ଆଣିଥିଲି ।

ଦି'ପହର ଯାଇ ରାତି ହେଲା,ତାତି କମିଲାନି , କି ଚେତା ଆସୁ ନଥାଏ । ବୋଉ ଖାଲି ଛାଟି ପିଟି ହେଉଥାଏ, ବାଉଳି ଖାଉଥାଏ, – 'ନନା ଫେରିଲେ କି ?'

ଶୁଣିଲି, ସାତ ଦିନ ହେଲା ନନା ମହାମାୟା ମନ୍ଦିରରେ ବସିଛନ୍ତି ଦୁଇ ପୁଅକୁ ଧରି ବୋଉ ଘରେ ଏକୁଟିଆ । ଶୁଣିଲି, ନନା ଗଲାଦିନରୁ ବୋଉକୁ ଜ୍ୱର, ପ୍ରଳାପ ଓ ସନ୍ନିପାତ । କାଲିଠୁଁ ମାମୁଁ ମାଇଁ ଆସି ଘର ସମ୍ଭାଳୁଛନ୍ତି । ସେ ହିଁ ତ ମୋତେ ଖବର ପଠେଇଲେ ଆସିବା ପାଇଁ ।

କଣ ପାଇଁ ନନାଙ୍କର ସାଧନା ? ଅନ୍ଧାରରୁ ମହାମାୟାଙ୍କର ଦୁଇ ଆୟତ ଆଖିକୁ ଚାହିଁ ମୁଁ ପଚାରୁଥାଏଁ ଥର କୁ ଥର । ଦୀପ ଶିଖାର ଥରଥର ଆଲୁଅରେ ଲାଗୁଥାଏ, ମହାମାୟା ଏବେ କଣ କହିବେ । ଅନ୍ଧାରରେ ଲୁଚି ଯାଉଥାଏ ଆଗକୁ ବାହାରି ଥିବା ଲହଲହ ଜିଭ । ମତେ ଲାଗୁଥାଏ ଏବେ ସେ କଣ କହିବେ ? ବାହାରେ ରାତି ଚଢେଇମାନଙ୍କର ଡେଣା ଫଡଫଡ, ସୁଲୁସୁଲୁ ପବନ,କନକ ଚମ୍ପାର ମିଠା ବାସ୍ନା । ଆକାଶରେ ଫୁଲ ବିଞ୍ଚିଲା ପରି ଗୋଟି ଗୋଟି ତାରା । ଜହ୍ନ ନାଇଁ, ଆଜି କି ତିଥି କେଜାଣି ?

ଶୁଣିଛି, ତିନି ବର୍ଷ ହେଲା, ନନା ଏମିତି ଚାଲି ଆସନ୍ତି , ମହାମାୟା ମନ୍ଦିରକୁ କେବେ କେମିତି । ଦିନେ ଦୁଇ ଦିନ ରହି ପୁଣି ଫେରିଯାନ୍ତି । ଅପ୍ରାପ୍ତି ଓ ହତାଶା ଘୋଟିଥାଏ ମୁହଁ ସାରା । ମୁଁ ତ ଘରେ ରହୁନି, ଏ ସବୁ ଜାଣିବି କେମିତି ? ପାଞ୍ଚ ବର୍ଷ ହେଲା ଆସ୍କା ଔଷଧାଳୟ ହୋଇଛି ମୋର ଘର । ଏ ସବୁ ତ ତାଙ୍କ ଇଚ୍ଛାରେ । ଔଷଧ ତିଆରି ଆଉ ରୋଗୀ ସେବାରେ ମୋର ବା ସମୟ କାହିଁ ?

ବାହାରେ କେଉଁ ଏକ ଚଢେଇର ବିକଟାଳ ରଡିରେ ଚମକି ପଡିଲି , ଶୋଇ ପଡିଥିଲି କି ? ଉଠି ପଡିଲି ଧଡ ପଡ ହୋଇ, ଧାଇଁ ଯାଇ ନନାଙ୍କୁ ଝାଙ୍କି ଦେଲି– "ନନା କାଲି ରାତିରୁ ବୋଉର ଚେତା ...."

ଧଡାସ କଲା ଏକ ବ୍ରହ୍ମଚାପୁଡା ମୋର ବାଁ ଗାଲରେ । ଅନ୍ଧାର ହୋଇଗଲା ଚଉଦିଗ । ମୁଁ ବସି ପଡିଲି, ଲିଭି ଯାଇଥିଲା ଦୀପ ଶିଖା, ଦିଶିଲାନି ଆଉ ମହାମାୟାଙ୍କର ମୁହଁ ।

********

ଜମୁନା ସୁନିଛେ, ସେ ରାତି ଏକା ଫିରି ଆଏଲେ ବଇଦ ଆର ନନା, ଆଘେ ପଛେ, ମହାମାୟା ମଁଦିରନୁ ବାହାରି କରି ଘରକେ । ଘର ବି ଅଁଧାର ହେଇ ଜାଇଥିଲା ନ । ବୋଉ ବି ଆର ନାଇଁ ଥାଇ ନ । ଜାହା ତାହା କରି ଚଲି ଗଲା ବାର ଦିନ ।

କଥା ନାଇଁ ବାରତା ନାଇଁ, ଚଉଦର ଦିନେ ବାସୁଦେବ ପଲେଇ ଆଏଲେ ଆସକା । ଗୁରୁ କେଶବ ଶତପଥିଁକୁ ବି କିଛି ନାଇ କହି । ଜାହା ପାଏଲେ ଧଏଲେ କେତେଟା ବହି, କେତେଟା ପୁଥି,ରାତାରାତି ବାହାରି ଆଏଲେ, ଆସକାନୁ  ନୟାଗଡ । ନୟାଗଡରୁ ବାଁକି ଚାଏର ଦିନର ବାଟ,ଚାଲି ଚାଲି ଅଖିଆ ଅପିଆ । ସମଲପୁର  ଜଉଥିବାର ଗୁଟେ ଡଁଗାନେ ବସିଗଲେ ଘାଟୁଆଲମନକୁ ଭୁରଡେଇ ସୁରଡେଇ ।

ବଇଦ କହେସନ, ସେ ଦିନୁ ସେ ଆର ବାଲ ନାଇ କାଟି ନ । ଦାଢି ମେଛା ବି ନାଇ କାଟି । ଡଁଗାନେ ଏକା ସୁନଲେ, ପାପକ୍ଷୟ ଘାଟର କଥା ।

ଲାଗଲା, ଇନେ ଏକା ଉତରିବେ, ଗାଧବେ ପାଧବେ ଧୁଇ ଜିବା ସବୁ ପାପ । ଜମୁନା ଦେଖିଛେ, ଏଡେ ବୁଢା ମୁନୁସଟେ ବଇଦ, କାଁଦି ପକାସନ ଇ କଥା କହେଲା ବେଲକେ  । 'ନନାର ସାଧନା ଭାଙ୍ଗିଛି ମୁଁ, ବୋଉର ମଲାବେଳେ ଟୋପାଏ ପାଣି ଦେଇ ପାରିଲି ନାହିଁ ପାଟିରେ । ହତଭାଗ୍ୟ ଜୀବନ ମୋର..'

ଜମୁନା ସୋର ପକାସି ଏଭେ ସେ ଆଘର କଥା ।

ବିନକାନେ ରହିଗଲେ ବଇଦ, ରହିଗଲେ ଜେ ରହିଗଲେ । ବାପାକେ ଜେନ ଦିନ ପାଏନ ଗୁଧାବାକେ  ଆଏଲେ  ବଇଦ ହସୁଥିଲେ, ମୁଲ ମୁଲ । ବାପାର ଆଘେ ବସଲେ ଆର ଗୁଟେ ଖଟଲିନେ, କାଣା କାଣା କଥା ହେଲେ । ବାପା ଖାଲି ପଚରଉଥାନ "ଗୋତ୍ର କାଣା ? କିଏ କିଏ ଆର ଘରେ  ଅଛନ ?"

ସେ ଦିନ ବଇଦ ଆମର ଘରେ ଖାଏବେ ବଲି ଆଘୋନୁ କହିଥିଲା ସାନ କାକା । ସାନକାକା ତ ସବୁବେଳେ କହୁଥିଲା: "ବାମହନ ପିଲାଟେ ଖିଆ ନାଇଁ ପିଆ ନାଇଁ, ଝାର ଜଁଗଲ ବୁଲୁଛେ ଉସୋ କସାର ଲାଗି, ଘର ଘର ବୁଲୁଛେ ରୁଗି ଦେଖବାର ଲାଗି । କେତେ ଉପକାରି ଦେଖ, କିଏ କାଣା ଦେଲେ କହେସି, ମୋର ଇ ଟା ସବୁ କାଣା ହେବା ? ତାହା କେ ପରେ ତାର ଗୁରୁ କହିଛନ, ଜେନ ଉସୋ ବନାବ, ଜାର ଲାଗି ବି ହଉ, ତାର ପାଁଚ ଭାଗନୁ ଭାଗେ ବାଁଟିଦେବ ଗରିବ ଗୁରବାକେ । ଜେ ପଏସା ଦେଇଥିବା ଉସୋ ବନାବାକେ, ତାହାକେ ଦେବ ତିନ ଭାଗ, ବାକି ଭାଗକ ତମର । ସେଟା ଏକା ତମର ମଜରି । ଇ ଧୁତି, ଧାନ, ଚାଉଲ, ଗାଏ ଦାମୁର, ଟଁକା ପଏସା ମୋର କାଣା ହେବା ?"

କାକା ହଁସି ହଁସି କହେସି : "ର ର ପିଲା , ମନ ଘର ଧରୁ.."

ବାପା ଭଲ କରି ଉଠି ନାଇ ପାରୁ ଥାଇ, ଖଟେ ସୁଇ କରି ଥର ଥର ହାତେ ଧରି ପକାଲେ ବଇଦର ହାତ । ବାପା କାଣା କହେଲେ ନାଇଁ ସୁଭୁଥାଇ । ବଇଦ ଗୁମ ହେଇ ଠିଆ ହେଲେ ଟିକେ ବେଲ, ବସି ପଡଲେ ଖଟଲିଥି । ଫେର ଠିଆ ହେଲେ ବାପା ଗୋଡ ଛୁଇଁ କରି ଜୁହାର ହେଲେ । ସେ ହସି ହସି କେତେ କଥା କହୁଥନ ସାନ କାକା । ବଇଦ ମୁଡ ଗାଡି କରି

ଖାଏଲେ କି କାକାର ସାଁଗେ ପଲାଲେ ବିନକା ।

ସେ ଦିନ ବେଲ ବୁଡାକେ ସାନ କାକା: "ଟୁରା ସଁସାର ଫାଁଦେ ପଡଲା ଏଛେନ । ଇ ଥର ଦାଢି ମେଛା କାଟବା କି ନି ଦେଖମା ।"



# ଗୁଟେ ଲାଲଟିନର କଥା

ଆର ଦିନର ବେଲବୁଡାକେ ରୁପାଧରର ଦୁଆରେ ଗଁତିଆଘରର ହଲିଆ ହାଜର । ରୁପାଧର ଘରେ ନାଇ ଥାଇ ତାର ବୁଆ ବି ଘରେ ନାଇଁ ଥାଇ । ଘରେ ଜଲୁଥିଲା ଗୁଟେ ଡିବିରି । ସଭେ ଜିଏ ଜାର ବସିଥିଲେ ଇନେ ସେନେ । ଗାଁ ଖୁଲି ପିଁଢାନେ ତାର ବାଇ,ତାର ଟିକେ ଦୁରିଆ ତାର ଦଦା, ଇ କୁହୁକୁହୁ ଅଁଧାରେ ଘରେ ଆର କିଏ କିଏ ଥିଲେ ଠିକସେ ଜନା ନାଇଁ ପଡୁଥାଇ । ଡିବିରିଟେ ବୁଲୁଥିଲା ଇନୁ ସେନ କେ, ସେଥି ରୁପାଧରର ମାଁର ମୁଁହ ଏକା ଦିସୁଥିଲା ।

ଗଁତିଆଘରର ହଲିଆ ସମାରୁ ପଚରାଲା : "ରୁପାଧର କାଁହି ଗଲା ଗୋ ?"

ଡିବିରି ଧରି କରି ଆଏଲା ରୁପାଧରର ମାଁ , ବଏଲା – "ଛାଡରେ ପୁତା ତାର କଥା, ଦୁଇ ବଛର ଉତରୁ କାଏଲ ଆଇଛେ ଘରକେ, ଘରେ ରହୁଛେ ଛନେ ହେଲେ, କାହିଁ କାହିଁ ଜଉଛେ ଜେ ତାହା କେ ଏକା ଜନା । ଦେଖ ତ କେତେ ଅଁଧାର, ଇ ଅଁଧାରେ ଇନ କେ ସେନ କେ ଡିବିରିଟେ ଧରିକରି ହେବାର ଟା କେଡେ ବିପଦ, କେତେବେଲେ କେନ କଥା , ଆମର ଫେନ ଛାଏନ ଘର । ଆଏଜ ପାଏନତିବୁହା ବେଲୁ କହିଥିଲିଁ, ଜାହିଁ ଜିବୁରେ ବାବୁ ଟିକେ ଝଁଏନୁ ଫିରି ଆଏବୁ, ହେଟା କେ ଟିକେ ଜଲେଇ ଦେବୁ...."

ରୁପାଧରର ମାଁ ଆର କାଣା କହିଥିତା କି କାଁଣା ଜେ ସମାରୁ ଆର ଟାକି ନାଇ ପାରଲା । ପଚରାଲା ସୁନତ: "କାହିଁ ଜାଇଛେ ରୁପାଧର ?"

"କିଏ ଜାନେ ରେ ବୁଆ ଦୁଇ ପହରୁ ଜାଇଛେ ଜେ ଜାଇଛେ, କେତେ କରି କହି ଥିଲିଁ ଟିକେ ଜଲେଇ ଦେବୁ ରେ ବାବୁ, ହେଲେ, ମୋର କଥା କାଁଏ ସୁନଲା ? କାଲେ ନାଇଁ

ଜୁଗେ ନାଇଁ ଇଟା ମୁଇଁ କେନତା କରି ଜଳେଇ ଜାନମି, ଜୁଏ କେ ବାଁଧିକରି ରଖବାର ଟା କାଣା କମ କଥା, ପାଏନ ଧୁକା କେ ଆର ଡର ନାଇଁ ନ, ଖାଲି ଟିକେ ଜଳେଇ ଦେଲେ ହେଲା...."

ହେତକି ବେଲେ ଏକା ବେଲବୁଡିଆର ହୁରହୁରିଆ ଧୁକାଥି ଲିଭିଗଲା ଡିବିରି । "ଜା" ଏକା ଥରେ କେ କହେଲେ ସମାରୁ ଆର ରୁପାଧରର ମାଁ । ସବୁ ଆଡୁ ଅଁଧାର ଗିଲି ଦେଲା ଇ ପୁରଥିକେ ।

ଟିକେ ଜୋରସେ କହେଲା ସମାରୁ : "ହଏଗୋ, ସୁନତ ରୁପାଧର ଆଏଲେ କହେବ ଗଁତିଆ ଡକେଇ ପଠେଇଥିଲା ବଲି । ଇ ରାତି ଏକା ଜିବା । ହଁ, ସେ କାଣା ଜେ ହେଟା କେ ବି ସାଁଗେ ନେଇ ଥିବା, ରାତି ଦେଖଲେ ସିନା ଜନା ପଡବା କେନତା କରି ଜଲସି ଜେ..."

ଉଁ ଚୁଁ କିଛି ନାଇ ସୁଭଲା, ରୁପାଧରର ମାର ଟୁଁଡୁ, ଖାଲି ସୁଭଲା ସମାରୁ ଜିବାର; କେତେବେଲ ଗଲା କେ ସୁଭଲା କାଠିକୁଟା ଭାଁଗବାର, ଚୁଇଲ ଫୁଁକବାର । ଦଁ କରି ଜଲଲା ଜୁଏ; ରୁପାଧରର ମାଁ ଡିବିରି ଜଲାଲା ଆରଥରେ ।

********

'ସବୁ ଆଡେ ଉକିଆ, ଗୁରା ଗୁରା ଲୋକବାକ, ଥାକଥାକ ଡୁଁଗରି, ଧାଡି ଧାଡି ଚାହା ବୁଟା, ଗିତ ଗାଇଗାଇ ଚାହା ପତର ତୁଲୁଥିବେ ଟୁକେଲମନେ, ମାହେଝିମନେ । ତମକୁ ଜେନ କାମ ମିଲବା ସେନେ ସେଟା ଏକା କରବ; ଇ ଆଡେ ସେଆଡେ ନାଇଁ ଦେଖବ, ଜେ ଜାହା କରୁଛେ କରୁ । ଗୁରା ସାହେବ ରିସମି ହେଲେ କାଁହୁ କାଣା । ଢୋ କରି ଲାଛି ଦେବା ବଁଧୁକ ଥି; ଫିକି ଦେବା ଡୁଁଗୁରି ତଲେ । ହଜି ଜିବରେ ବାବୁ, ସାହେବ ଲୋକ କିଏ କାଣା କରବା ସେମନକୁ......'

"ତମେ କେନତା କରିଗଲ ବୋ... ପଚରାସି କିଏ ଝନେ ।" ବଁଧଆରି ଥି ବସିଥିସନ ପାଁଚ ଛଅ ଝନ ପିଲା ମଝିନେ ବସିଥିସି ରୁପାଧର । ଭୁତ ଭୁତିଆ ଅଁଧାରଥି କାର ମୁହୁଁ ନି ଦିସୁଥାଇ; କହୁଥିସି ରୁପାଧର ।

"ଇନୁ ବଲାଁଗେର.. ବଲାଁଗେରୁ ଜିବ ସିଧା ସିଧା ବରପାଲି; ସେନୁ ବରଗଡ.. .. ବରଗଡୁଁ... ସମଲପୁର; ସମଲପୁରୁଁ... ଝାରସୁଗୁଡା । ସେନୁ ବସବ ରେଲ । ରେଲେ ଜିବାରଟା ମହାସୁଖ ବୋ, ଖାଲି ବସିଥିବ ତାର ତାର ମିସିନ ଘିଚିନଉଥିବା । ବଖରା ବଖରା ହେଇ ଥିବା; ପଟା ପଡିଥିବା.. ଘର ବାଗିର ବଲତ.. ପହେଲା ଘରେ ଥିବା ମିସିନ, ସେନୁ କୁହୁଲା ବାହାରୁଥିବା, ଖାଲି ସୁଭୁଥିବା ଛୁକଛୁକ ଛୁକଛକ.... କେନତା ଲାଗସି ନି କହିହୁଏ ହେଟା ବୋ.... ଛାଡ.. ସେନୁଁ ରେଲେ ଜିବ କଲକତା.... କଲକତାନୁଁ ଫେର ରେଲେ..

ତହେଁରୁ ମଟରେ; ସେନୁଁ ଚାଲି ଚାଲି ଚାହା ବଗାନକେ । ଇନୁଁ ଆଠ ଦିନ ଜିବ ଜେ ଜିବ; ଜଉଥିବନ । ସେ ଦେସକେ ବଲସନ ଅସମ, କାଁକରି କହ ତ ସେନେ ସମାନ ଠାନଟେ କାହିଁ ପାଏବ ? ସବୁ ଆଡେ ଖାଲି ଡୁଁଗୁରି ଡୁଁଗୁରି; ଥାକ ଥାକ ହେଇ ଚାହା ବୁଟା...."

"ଛାଡ..ବୋ.. ତୋର ଚାହାବୁଟାର କଥା.. ମଜା କଥାଟେ କହନ । କହତ , ସେନେ ବି କାଣା ଆମର ଇନର ବାଗିର ପିଲା ଟୁକେଲ ଉଧଲିଆ ଜାଏସନ ? ସେନେ ବି ଝାର ଜଁଗଲେ ଏକଲା ଦୁକଲା ହଁସି ମଜା ହଉଥିବା ତ ? କାହିଁ କହେବୁ ରେ ଭାଇ.. ଭାବୁଥିବୁ ଆମେ ଭାଏଲ ଜିମୁଁ ? ଧରାପଡି ଜିବା ତୋର ସବୁ କଥା......"

ମାଟୁ ଇ କଥା କହେଲା ବେଲକେ ଏକା ବିଜଲି ମାରସି । ଚଲ କରସି ଛାତି । ରୁପାଧର ବଲସି ଆଏଜ ଥଉନ ବୋ କାଲକେ କହେମି, ଚାଲ ଜିମାନ, ଆଏଜ ଧୁକା ଗରେଲ ହେବା ବାଗିର ଲାଗୁଛେ । ହେତକି ବେଲୁ ବିଜଲି ମାରୁ ଥିସି ନ ରୁପାଧରର ଛାତିନେ ।

********

ରାଏତ ସରତା ବିଜଲି ମାରୁଥିସି । ଘଡେ ଉକିଆ ହେଇଜଉ ଥିସି ସବୁଆଡେ; ବୁଁଦେ ବି ପାଏନ ନାଇ ବରସେ, ଗହଦ ଗୁଲଗୁଲି ଥି ରାଏତ ସରତା ସିଝୁଥିସି ରୁପାଧର । ଢବାଘର ର ପିଁଢା ଥି ଖଟଟେ ପକେଇ ଦେଇଥିସି ତାର ମାଁ, ସେମନେ ସୁଇଥିସନ ବାରିଆଡର ଦୁଆର ନେ । ରଁଧାଘରର ପରେନ ପାଟିଥି ଝୁଲୁଥିସି ଲାଲଟିନ ଖଁଡେ ରସିଥି । ଧୁକା ହେଲେ ପିଟି ହେଇଜିବା କାଁଥି ଥି ହିଟେଇ ଦେବୁ ରେ ବାବୁ .... କହିଥିସି ତାର ମାଁ । ଲାଲଟିନ ଝୁଲୁଥିସି । ଚାଏର ଖଁଡ କାଁଚ ମଝିଥି ସୁନାପିଲା ବାଗିର ଦେଖୁଥିସି ଲାଲଟିନ, ସବୁ ଆଡେ ମିଟମିଟ ମିଟମିଟ ।

ଲାଲଟିନ କେ ଗଁତିଆବୁଢା କହୁଛେ: "ଇ ଟା କେ ମାହାପୁରୁ ଗୁଡି କେ ଦେଇ ଦେ ରେ ବାବୁ, ଚିନହାଁ ଟେ ରହେବା । ରାତି ଗିତ ଗାଏଲା ବେଲକେ ସଭେ ତତେ ସୋର ପକାବେ ।"

ଲାଲଟିନ କେ ଦେଖିକରି ସାଁଗ ମନେ କହୁଛନ : "ଆଖଡା କଲା ବେଲ କେ ବଡା ଅଡୁଆ ହଉଛେ ବୋ, ଆନୁ ଥିବୁ ଟିକେ ଟିକେ, ଡିବିରି ଜାଲି କରି ଖରାଦିନିଆଁ ରାତି ଆଖଡ କରବାରଟା ବଡା ଦୁଖ । ଟିକେ ଧୁକା ହେଲେ ପଟ.. ଫେର କାର ଘରକେ ଜ ପହଁଟେଇ । ଖରାଦିନ ବଲି ସମଁକର ଘରେ ଲିଭେଇ ଦେଇଥିସନ ଜୁଏ ।"

ତାର ମାଁ ବି କହେସି : "ବାବୁରେ, ଇ ଲାଲଟିନ ଟା ବଡା ସୁବିଧା ଗା ଇନକେ ସେନକେ ନେବା ଆନବା କେ ।"

ରୁପାଧର ଭାବସି – ଠିକ ଥିଲା ଜେତେବେଲେ ଲାଲଟିନ ନାଇଁ ଥାଇ, ଲାଲଟିନ

କାଣା କିହେ ଜାନି ନାଇ ଥାଇ । ସବୁ ଠିକ ଥିଲା ଲୁକେ ଅଁଧାରେ ବୁଡୁରି ବୁଡୁରି ବଁଚୁଥିଲେ ଜିବନ ।

ରୁପାଧରର ଚଟ କରି ସୋର ପଡସି ରେଲଥି ବସିକରି କଲକତା ଗଲା ବେଲର କଥା । ଠିକ କହୁଥିଲେ ସେ ମହାତମା ଗାଁଧି, ଥରେ ଜାନି ଗଲେ ସୁଆଧିନ ହେବାର ଟା କାଣା; ତାହେଁରୁ ସିନା ଜନା ପଡବା ଆମେ କେତେ ଦୁଖେ ଅଛୁଁ ।

********

ଦସ ବାର ଝନ ଥିଲେ ସେମନେ । ଆମେ ଜେନ ରେଲଡବା ନେ ବସିଥିଲୁ ସେମନେ ବି ବସଲେ । ତାକର ସାଁଗେ ଥିଲେ ଆମର ବାଗିର କଥା କହୁଥିବା ଦୁଇ ତିନ ଲୋକ । କାଣା କାଣା କହୁଥିଲେ ହେ ମନେ ମୁଇଁ ସେତେବେଲେ ବୁଝିନାଇ ପାରୁଥାଇ । ତାଁକୁ କେତେ ଜେ ଲୋକ ଛାଡବାକେ ଆଇଥିଲେ, କେତେ ଗହକି, କେତେ ଜେ ଜେ କାର । ଭାରତ ମାତାକି ଜେ, ମହାତମା ଗାଁଧି କି ଜେ ।

ଆମେ ତରାପଟିଆ ନେ ବସିଥିଲୁ, ସଁକିରି ଜଉଥିଲୁ ସେମନ କୁ ଦେଖିକରି । କଲକତା ତକ ଜେନେ ବି ଗାଡି ଅଟକିଛେ, ଲୋକ ଆଇଛନ ସିତେ କାକରେ ରାଏତ ବିକାଲି; ସହ ସହ ଲୋକ ହାତେ ଫୁଲମାଲ, ଟୁଁଡେ ଜେ ଜେ କାର । ଆମେ ଜାନି ନାଇଁ ଥାଇ ସେମନେ କିଏ, କେନ କେ ଜଉଛନ, ଝନେ କେ ମହାତମା ବଲୁଥିଲେ, ତାର କଥା ସଭେ ସୁନୁ ଥିଲେ, ଜେନ ମନେ ବି ଅଉଥିଲେ ଫୁଲମାଲ ଧରି କରି, ତାହା କେ ପିଁଧଉଥିଲେ; ତାହାକେ ମୁଁଡିଆ ବି ମାରୁ ଥିଲେ କିଏ କିଏ ।

ରେଲଗାଡି ଚାଲୁଥିଲା – ଛୁକ ଛୁକ ଛୁକ ଛୁକ ।

ଖଁଡେ ଅଁଗଛି ପିଁଧି ଥିଲି ମୁଇଁ, ଆର ଧରି ଥିଲି ଖଁଡେ କରିଆ । ରେଲଗାଡିର ହେମାଲ ଧୁକାଥି ଗୁଟେ ତରାକେ ମୁଇଁ ବସି ଥିଲି ବୁଡବୁଡି ହେଇ । ଘରୁ ଭାଗି ଆଇଥିଲିଁ ତ, ବଲାଁଗିରୁ ସାଁଗ ପାଏଲି ବଲି ତାଁକର ସାଁଗେ ପଲେଇ ଆଇଲି ସମଲପୁର । ଗାଁ ଘର ମତେ ବିସ ପିତା ଲାଗୁଥିଲା ହେତେବେଲେ, ଲାଗୁଥିଲା କାହିଁ ପଲାତି ମୁହୁଁ ନାଇଁ ଦେଖତିଁ କାର ବି । ହେ ମନେ ବି ଥିଲେ ଆଠ ଝନ ଆମର ଫାଲର, ଜଉଥିଲେ ଚାହା ବଗାନ । ଆମେ ସମଲପୁରୁ ଗଲୁଁ ଝାରସୁଗୁଡା, ହେମନ କେ କହେଲି – ମତେ ବି ସାଁଗେ ନିଅ ବୋ ଭାଇ ।

ପୁସ ମସିଆ ସିତ ରାଏତ । ଠକଠକ ଠୁଁଡି ବାଜିଜଉଥାଏ ମୋର । ଜୁଲ ଜୁଲ ମୁଇଁ ଦେଖୁଥାଏଁ, ମତେ ଲାଗଲା ମତେ ବି ଦେଖୁଛେ ମହାତମା ବଲବାର ଲୋକଟା । ଆଁଖି ମୁଜି ଦେଲା ବାଗିର କଲି ଘଡେ, ଫେର ଦେଖଲି ବେଲକେ, ସେ ଫେର ଦେଖୁଛେ । ଏଛେନ ଲାଗଲା ସେ ଖାଲି ନାଇଁ ଦେଖବାର, ମତେ ଦେଖି କରି କାଁଦୁଛେ । ସିତେ ଝୁମରା ନାଇ ତବି ଆଏଖ ମୁଜି ଦେଲି । ମୋର ଦିହେ କାଣା ପଡଲା ବାଗିର ଲାଗଲା ବେଲକେ ଚମକି ପଡଲିଁ

। ମୋର ପାଖେ ଠିଆ ହେଇଛେ ମହାତମା ଖାଲି ଦିହେ, ତାର ପଛରା ଉଢେଇ ଦେଇଛେ ମତେ । କିଛି କହି ନି ପାରଲି, ସେ ରାତି ମୁଇଁ ବି ନାଇଁ ସୁଇ ସେ ବି ।

ସକାଲୁ ଦୁଇ ତିନ ଝନ ଆମର ପାଖକେ ଆଏଲେ ମହାତମାର ସାଁଗେ । ଆମେ କାହିଁ ଜଉଛୁଁ, କେନୁ କେନୁ ଜଉଛୁଁ, କେତେ କଥା ପଚରାଲେ । ଗହଦୁ ଆଘୋ ନୁ ଚାହାବଗାନ ଜାଇ ଥିଲା, ସେନର କଥାବି ପଚରାଲେ ତାହାକେ । ମହାତମା ସବୁ କଥା ସୁନୁ ଥାଏ । ଗହଦୁ କେ ପଚରାଲା ସାହେବ ମନକର କଥା, କେନତା କରି ରଖସନ, କେତେ ଭୁତି ମାସରି ଦେସନ । ଫେର ଆଏଲା ଗୁଟେ ଟେସନ, ଧାଇଁ ଆଏଲେ ଲୋକ ମନେ ଫୁଲମାଲ ଧରିକରି ।

ଆମେ ହେନେ ଏକା ସୁଲଲୁ; ବିଲାତ ନେ ପଢିଛନ ମହାତମା । ବଡ ଦେବାନ ଘରର ପିଲା, ଛୁଆ ବେଲୁନ ପିଁଧିଛନ କୋଟ ବୋଟ, ଏଭେ ପିଁଧୁଛନ ଆମର ବାଗିର ଧୁତି । ଗୁରା ସାହେବ ମନେ କେନ ଦେସୁ ଆସି କରି ଆମକୁ ସାସନ କରୁଛନ, ହେ ମନକୁ ଖେଦବେ ବଲି ଦେସ ସାରା ବୁଲୁଛନ । ଲୁକର ଦୁଖ ସୁଖ ବୁଝୁଛନ, କହୁଛନ ବିଲାତି ଜିନିସ ନାଇ ପିଁଧ କି ନାଇ ଖ । ଆମକୁ ସୁଆଧିନ ହେବାକେ ପଡବା, ବଦଲାବା କେ ଏକା ପଡବା ଇ ପରଆଏତିଆ ଜିବନ । ଇଟା ବଦଲିବା ଆମେ ଆମର କମେଇ କୁଠେଇ ଖାଏଲେ । ଛୋଟ ବଡ ସଭେ ମିଲି ମିସି ରହେଲେ । ପରର ଦୁଖେ ସୁଖେ ଆମେ ଠିଆ ହେଲେ ।

କଲକତା ଆଏଲା, ଡବା ନୁଁ ଉତୁରିଲା ବେଲକେ ଆମେ ମୁଡିଆ ମାରଲୁଁ ମହାତମାକେ । ନିଜର କାହାକେ ଛାଡିକରି ଗଲା ବାଗିର ଲାଗୁଥାଏ, ଆମେ ଗହଲି ଥି ମେସି ଗଲୁ । ସେମନେ ବି ମେସି ଗଲେ ଆର ଗୁଟେ ଗହଲି ନେ କେତେ ଫୁଲମାଲ ଆର ଜେ ଜେ କାର ସାଁଗେ ।

ଜେଭେ ବି ଇ କଥା ସୋର ପଡସି ରୁପାଧରର, ଆର ଝୁମରା ନାଇ ପଡେ, ରାଏତ ସାରା ଛଟପଟ ଛଟପଟ ।

********

ଥିର ପିଆବେଲ କେ ଉଠଲା ରୁପାଧର । ରାତି କାଣା ସପନି ଥିଲା ସବୁ ସୋର ନାଇ ପଡୁ ଥାଇ, ଖାଲି ସୋର ପଡୁ ଥିଲା ସେ ଚାଲୁଛେ ଜେ ଚାଲୁଛେ, ବାଟ ନାଇଁ ସରବାର । ସବୁ ଆଡେ ବିଛେଇ ହେଇଛେ ବାଟ, ରୁପାଧର ଇ ଆଡେ ଟିକେ ଜଉଛେ, ସେ ଆଡେ ଟିକେ ଜାଉଛେ; ଗୁଁଦଲି ଜଉଛେ ସବୁଥର; ଜେନତା ଗୁଁଦଲି ଜାଇଥିଲା ଥରେ ଚାହାବଗାନ ଥି ।

ନୁଆଁ ନୁଆଁ ଜାଗା ଥାଏ ରୁପାଧର, ମୁଟେ ବନେ ନାଇ ଲାଗୁଥାଇ । ଟିକେ ଠିଆ ଉଠଲେ ସାହେବ ଖାଲି ଭୁକୁଥାଏ, ତାର ଭାସି ଥି କାଣା କାଣା । ତାର ସେ ଧୋବ ସର ସର କୁକୁର, ଭାଲୁ ବାଗିର ଜାର ଦିହି ଜାକିର ବାଲ, ସେ ବି ଭୁକୁ ଥାଏ ରୁପାଧର କେ

ଦେଖଲେନ । କେନ ଦେସୁଁ ଆଇଲେ ଇ ସାହେବମନେ ଇ ଚାହା ବଗାନ ସବୁ କେନତା କରି ହେଇ ଗଲା ତାଁକର ? କାଁ କରି ଆମେ କାମ କରୁଛୁ ଇ ସାହେବ ଠାନେ ଘର ଦୁଆର ଛାଡି କରି ମାଡ ଗାଲି ଖାଇକରି ?

ରୁପାଧର ମନ ଭିତରେ ଭିତରେ ଘାଁଟି ହଉଥାଏ ଇ କଥା । ହେନତା ଘାଁଟି ବି ହଉଥିସି କାମେ, ତଲ ଉପର, ତଲ ଉପର । ଦୁହାରୁ ଥିସି କଅଁଲି କଅଁଲି ଚାହା ପତି, ଧାଡି ଧାଡି ଚାହା ବୁଟା ସଁଧିର ଟିକେ ବଲି ବାଟେ । ଗିତ ଗାଇ ଗାଇ ମାଏଝି ମନେ, ଟୁକେଲ ମନେ ତୁଲୁଥିବେ କଅଁଲି କଅଁଲି ଅଗି, ଗଦେଇ ଦଉଥିବେ ଡୁଁଗରି ବାଗିର । ଗୁଟେ ଗୁଟେ ଗଦାକେ ଝନେ ଝନେ ଦୁହାରୁ ଥିବ ଜେ ଦୁହାରୁ ଥିବ; ସାରା ଦିନ ଦୁହାରୁ ଥିବ ନ, ରୁକୁଥିବ ଉଁଡଉଥିବ, ରୁକୁ ଥିବ ଉଁଡଉଥିବ; ଦୁହାରୁ ଥିବ । ନୁଆଁ ନୁଆଁ ବେଲର କଥା, ଥରେ ବେଲ ବୁଡିଗଲା ଡୁଁଗୁରି ତଲେ, ଦେଖୁନ ଦେଖୁନ ଚାରିଆଡେ ଅଁଧାର ।

ରୁପାଧର ଗୁଁଦିଲି ଗଲା ଚାହା ବଗାନ ଭିତରେ; ଖାଲି କିଁଦୁରୁଥାଏ ଧାଡି ଧାଡି ବୁଟା ଭିତରେ ଖାଲି କିଁଦୁରୁଥାଏ । ଜାହା ହଉ କେତେ ରାତିନେ ଜେ ଗହଦୁ ଆଏଲା ସାହେବ ଘରୁ ଲାଲଟିନ ଧରି କରି । ହେ ଥର ରୁପାଧର ପହେଲା କରି ଦେଖଲା ଲାଲଟିନ ।

ଲାଲଟିନ କଥା ସୋର ପଡଲା ଜେନତା ରୁପାଧର ଦେଖଲା ଏତକି ବେଲ ତକ ଜଲୁଛେ ଲାଲଟିନ । ଲିଭେଇ ନାଇ ଜାନେ ବଲି, ତାର ମାଁର ଇ ଆଡେ ନିଘା ନାଇଁ । ଲାଲଟିନ କେ ଘରକେ ନେଲା ରୁପାଧର; ତାର ଆନିଥିବାର ଟିନ ବାକସର ପାସେ ରଖଲା । କଲେ କଲେ ଖୁଲଲା ବାକସକେ । ଭିତରୁ ବାହାର କଲା; କୁରତା ପେଁଟ ଦୁଇ ସାର ଆର ସାହେବ ଦେଇ ଥିବାର ଲଁବା କଲା କୋଟ ।

ଲାଲଟିନ ଆର ଇ ସବୁକେ ଧରି କରି ସିଧା ଚାଲି ଆଏଲା ବାରି ଆଡ କେ । ପହେଲେ ରଖଲା କୋଟ କେ ତାର ଉପରେ ଗୁଟେ କୁରତା, ତାର ଉପରେ ପେଁଟ , ତାର ଉପରେ ଆର ଗୁଟେ କୁରତା,ତାହେରୁ ପେଁଟ । ଜେତକି ଥିଲା ମାଏଟ ତେଲ ଲାଲଟିନ ନେ, ସବୁକେ ରୁକି ଦେଲା ତାର ଉପରେ । ଗୁଟେ ପାଖର କାଁଚ ଖୁଲଲା, କାଠି ଟାକେ ଜୁଏ ଧରାଲା, ତାହେରୁ ଲେଛେଇ ଦେଲା ପେଁଟ କୁରତା ନେ ।

ଘୁଚିଗଲା ରୁପାଧର , ଧୁରିଆ ନୁ ଦେଖଲା ପେଁଟ କୁରତା କେନତା ଜଲୁଛେ , ତାହା କେ ଲାଗଲା ସେ ସାହେବ ଜେନତା ଜଲି ଜଉଛେ । ଜଲି ଜଉଛେ ତାର ବିଚ କିଟିଆ ହସି, ତାର ଥୁ କରିଥିବାର ମାଁକଡ ବାଗିର ମୁହଁ।

ଉକିଆ ହଉଛେ ସବୁ ଆଡେ, ଉକିଆ ହେଇଜଉଛେ ମନ । ଗୁଟେ ଖୋଲ ଜଲିଗଲେ ଏତେ ଉକିଆ ? ରୁପାଧର ସବୁ ଆଡକେ ଦେଖଲା ଅକାବକା ।

*******

ରୁପାଧର ଜଲେଇ ଦେଲା ତାର ପେଁଟ କୁରତା ।

ଇଟା ବେଲବୁଡା ତକ ଗାଁ ସାରା ହୁରି ପଡିଗଲା, ପଚରାଲେ ସେ କହୁଛେ "ସେଟା ବିଦେସି ଜିନିସ ଆମର ଇନେ ଆମେ କାଁକରି ପିଁଧମା ।" ସଭେ ଘାଏ ଘାଏ ପଚରଉଛନ ସମକୁ ଘାଏ ଘାଏ ସେ ଗୁଟେ କଥା ଏକା କହୁଛେ : "ସେଟା ବିଦେସି ଜିନିସ ଆମର ଇନେ ଆମେ କାଁ କରି ପିଁଧମା ।"

ରୁପାଧରର ସୋର ପଡୁଛେ ମହାତମା ଗାଁଧିର କଥା, କେତେ ଘରର ପିଲା, ବିଲାତନୁ ପାଠ ପଢି କରି ଫିରିଛନ, ପିଁଧୁଛନ ଖଦଡ ଧୁତି । ରୁପାଧର ବି ଆମର ଇ କୁସଟା ବୁନା ଧୁତି ପଧଲେ କାଣା ଉନା ହେବା ? ଆରୁ ବି ଭାବସି ହେ ସାହେବର ହେ ଜୁଁନହାଁ କୋଟ କାଁକରି ପିଁଧବା ରୁପାଧର ?

ସାହେବର କଥା ସୋର ପଡଲେ ମୁଁହୁଁ ଲାଲ ହେଇ ଜାଏସି ରୁପାଧରର । ଡର ବି ଲାଗସି ସୋର ପଡଲେ ହେ ରାତିର କଥା । ଦୁଇ ବଛର ହେଲା ଘର କେ ନାଇଁ ଆସି ଥାଇ ବଲି ଛୁଟି ମାଗି ଜାଇ ଥିଲା ରୁପାଧର । ତାର ଇ ଟିନ ବାକସେ ଭରିଥିଲାନ ତାର ଇ ପେଁଟ କୁରତା । ରାଏତ ଟିକେ ହେଇ ଜାଇ ଥିଲାନ, ସଭେ ମନା କରୁଥିଲେ ସାହେବ କେ ଏଛେନ ନାଇଁ ଭେଟ । ମୁଁହୁଁ ମୁଁହୁଁ ଲାଗୁଥିଲା ନ ଘରକେ ଆଏବାର ଲାଗି । ଏକଲା ତ ନାଇଁ ଆସି ହୁଏ, କଲକତା ତକ ସାଁଗ ହେଇଥିଲେ କେତେ ଝନ । ରୁପାଧର ଭାବୁଥିଲା, ତାଁକର ସାଁଗେ ହେଲେ ପଲେଇ ଆଏମି ଅସମ ନୁ । କଲକତା ନୁ ଝାରସୁଗୁଡା କେ ରେଲ ବସଲେ ହେଲା , ଘରକେ ମନ ଘିଚି ଥିଲାନ ।

ସାହେବ ପିଇଥଲା କି କାଣା ଜେ, ରୁପାଧର କେ ଦେଖଲା ଜେନତା ରଡଲା ଜେ କାଁହୁଁ କାଣା ? ଇ ଠିଆ ହେଇ ଥାଏ ହାତ ଜୁଡି କରି ସାହେବର ବଏଠକ ଘରେ । ହୁଁ ଧାପେ ଧାଇଁ ଆଏଲା ସାହେବ, ବକି ଦେଲା କାଣା କାଣା ଆର ଥୁ କରି ଥୁକି ଦେଲା ରୁପାଧରର ମୁହେଁ ।

ରାଗ ତ ପରମ ଚନଡାଲ ରୁପାଧର ବି ସଁଭାଲି ନି ପାରଲା ଆରୁ । ପାଖେ ଡେରା ହେଇଥିଲା ଗୁଟେ ବାଡି । ରୁପାଧର ପରଘେଇ ଦେଲା ଗୁଟେ ବାଡି ସାହେବର ମୁଡେ ମୁଡେ । ମୁଡ ଗାଡିକରି ପଡଲା ସାହେବ । ରୁପାଧର ଥରୁଥାଏ ରାଗେ ଆର ଡରହେ । ସାହେବ ପଡିଥାଏ ହଲ ନାଇଁ ଚଲ ନାଇଁ । ଘର ସାରା ରକତ ଝୋଲ ଖୋଲ । ଇ ଲାଲଟିନ ଜଲୁଥିଲା ସେତେବେଲେ ସେ ଘରେ ।

ରୁପାଧର ପଲେଇ ଆଏଲା କଲକତା ସିଧା ସିଧା ସେ ରାତି ନ, କେ ଜାନେ କେନତା କରି ଲାଲଟିନ ବି ଆସି ଥିଲା ତାର ସାଁଗେ ।

********

"କଲକତାର ହାବଡା ପୋଲ କେନତା ଟା ବୋ ?" – ପଚରାସି ଫଗନୁ ।

ବେଲବୁଡିଆ ବଁଧ ଆରି ସବୁ ଦିନର ବାଗିର ଆଏଜ ବି ବସି ଥିସନ ଚାଏର ପାଁଚ ଟା ପିଲା । ଫଗନୁର ବଡା ଇଛା ସେ ବି ଜାଏତା ଚାହା ବଗାନ, ବୁଲି ଆଏତା କଲକତା । ସାହେବର ବଗାନ ଥି କାମ କରତା; ପଏସା ଆନତା; ଜମିନ ଘିନତା ସୁଖବାସି ହେଇ ପରର ଜମିନଥି ଆର ଚାସ କରୁଥିବା କେତେଦିନ ?

"ଚାଲ ବୋ ଆମେ ସଭେ ବି ଜିମା ଚାହାବଗାନ, କଲକତା ବି ଦେଖତାଁ, ରେଲ ବି ବସତାଁ ଆର ସାହେବ ବି ଦେଖତାଁ ।"

ସାହେବର କଥା ପଡଲେନ ରୁପାଧର ଚମକି ପଡସି । କହେସି, – "ଛାଡ ବୋ ସାହେବ ମନକର କଥା, ହେମନେ ଆଇଛନ କେନ ଧୁର ଦେସୁ; ଆମର ଇନୁ ଧନ ସଁପତି ନେବେ ଆର ଜାହାଜେ ବସବେ, ପଲାବେ । ଆର ଜେତେ ଦିନ ଥିବେ, ଆମକୁ ଡରେଇ ଧୁପେଇ କରି ରଖବେ । ଥରେ ପରେ ଗୁଟେ ଲୋକ କେ ପିଟି ପିଟି କରି ମାରି ଦେଇଥିଲା ଗୁଟେ ସାହେବ, ଆମେ ହେନେ ସୁନିଛୁଁ । ଆର ଜାନିଛ, ସାହେବ ମନେ ମାରି ଦେଲେ ବି କିଛି ନାଇ ହୁଏ । ତାଁକର ହାତେ ନ ନିଅମ କାନୁନ । କିଏ କାଣା କରବା; ଆମର ଇ ରଜା ମନେ କାଣା କରିପାରବେ ସାହେବ କେ ?

ମାଟୁ ପଚରାସି – ଆମର ଇ ପାଟନା ରଜାର ନୁଁ ବି ସାହେବ ବଡ ?

"ପାଟନା ନେ ଏଛେନ କେନେ ରଜା ଅଛେ ବୋ ?" ରୁପାଧର କହେସି । "ସଭେ କେଲାନୁ ପରେ ରଜାପିଲା ଗୁଟେ ଆନିଛନ ଜେ ସେ ଜାଇ ପାଠ ପଢୁଛେ କେନ ଦେସେ । ଏଭେ ତ ସାହେବ ମନକର ଅନସାରେ ଚଲୁଛେ ଆମର ଇ ପାଟନା ରାଏଜ । ସେ ବାଘମାରୁ ସାହେବ କେ ବାଘ ଖାଏଲା ଜେ, ଏଭେ ଆଇଛେ ଆର ଗୁଟେ ନୁଆ ସାହେବ ।"

"ହଏ ବୋ କେନେ ପରେ ଜୁଧ ଲାଗିଛେ ?" ପଚରାସି ଫଗୁନୁ ।

"ଲାଗିଥିଲା, ସାହେବ ମନକର ଦେସେ ବଡ ଜୁଧ ଟେ ଲାଗିଥିଲା । କେଭନୁ ସରଲା ନ । ଜୁଧ ସରଲା କେ ପରେ ସାହେବ ମନେ ମାଡି ଆଏଲେ ହୁଦାହୁଦା ହେ ଚାହା ବଗାନକେ । ଚାସ କଲେ ଚାହା ।"

" ଚାଲ ନ ବୋ ଆମେ ଘାଏ ଜିମା" – ଫେର ଘାଏ କହେସି ଫଗନୁ ।

" ଦେଖ ଭାଇ ମୁଇଁ ଆର ହେ ସାହେବ ମନକର ହଲିଆ ହେଇ ନାଇ ଜାଏନ । ଇନେ ଏକା ଥିମି ଚାସବାସ କରି ଖାଏମି । ତମେ ନାଇ ସୁନବାର କାଏଁ ରେ, ସାହେବ ମନକୁ ଖେଦବା କେ ଏଭେ ସବୁ ଆଡେ କେତେ କଥା ଚାଲିଛେ । କେତେ କେତେ ଲୋକ ଲାଗିଛନ । ଆମେ ହେ ଥର ଗଲା ବେଲେ ଆମର ସାଁଗେ ପରେ ମହାତମା ଗାଁଧି କଲକତା ଗଲେ ବୋ । ଗାଁଧି ତ କହୁଛନ ଆମେ ସାହେବ ମନକୁ କେନ କଥାନେ ବି ସହଜୋଗ ନାଇଁ

କରବାର କଥା । ଆର ତମେ ଜେ ସାହେବ ମନକର ହଲିଆ ହେବାକେ ଜିବ ଚାହା ବଗାନ ? ଜିବ ଜେ, ଜିବ ବଏଲେ ଜ । ଚାଲ ଚାଲ ଅଁଧାର ହେଲା ନ, ହେ ଲାଲଟିନ ଟିକେ ନାଇଁ ହେଲେ ମୋର ମାଁ ତ ଆର ଚଲିନାଇଁ  ପାରବାର ନ, ହେଲେ ଜାଲି ନାଇଁ ଜାନବାର ତାଏଲ ଆଏଜ ତକ ।”



# ଆମର ଇ ଢବାଘର

ଲଖମି ଜୋରର ଗୁଟେ କାନିଥି ତିନଟା ଇଟଲା ନେ ବସିଥିଲା ଭାତ । ଗବ ଗବ ଫୁଟୁଥିଲା ଚୁଲିର ଭାତ ଆର ଦିରଜୁର ଭୋକ । ସକାଲୁ ଥିର ପିଇଥଲା ଦିରଜୁ, ବେଲାକେ ଖାଇଥିଲା ପଖାଲ, ବୁଁଧିଲା ଉଇଲ ଆର ତେତେଲ ଚିଟକା ସାଁଗେ । ଦୁଇ ପହରେ ଫେର ଖାଇଥିଲା ପଖାଲ ବାଏଗନ ପୁଡା ସାଁଗେ । ଏଛେନ ବେଲ ବୁଡଲା, ମୁନୁସର ଭୋକ ନାଇ ମରେ, ଜଲୁଥିସି ଇ ଜୁଏ ଲଖେନ । ସେନେ ଜେତେ ରୁକୁ ଥ, ଭାତ ପଖାଲ, ପିଠା ପନା, ମାଛ ସିକାର ।

ଦିରଜୁର ମାଛ ସିକାର କଥା ସୋର ପଡିଗଲେ, ଟୁକ ଟୁକ ଲାଗସି ଘରକେ, ଘରର ଖେତ ଖଲା, ଖାନା ପିନାକେ । ତିନ ଦିନର ଅଢିଆ ଥିଲା ଘରେ । ପିଲା ଛୁଆର ଜନଜାଲେ କେନତା କରୁଥିବା ସମାରି, ବଇଦ ଘରେ ବୁଝୁଥିବେ ଜେ ।

ଏଭେ ଦସରାର ଖରାଥି ଝିଲ ଝିଲ ପାନି, ଧାର ଲମିଜଉଥିବେ ସୁରୁ ସୁରୁ ଝାଇଁ ଝୁରି । ସାଗୁଆ ସାଗୁଆ ଧାନ ଗଛର ଛାଇଁ ଥି ଲୁକଲୁକାନି ଖେଲୁଥିବେ କେତେ ଖପସି, ବଏଁରି, ଟେଁଗନି ଆର ପୁଟିଆ । ଧାନ ଗଛେ ଫୁଟି ଆସୁଥିବା ନ ଫୁଲ ଇନେ ସେନେ । ଛେରା ପକାଲା ବାଗିର ଧୋବ ଧୋବ ଦିସୁଥିବା ଠାନ ଠାନ । ଏଭେନ ଏକା କୁମନା କି ଧଉଁର ବସେଇ କରି ଝୁରି ଧରବାକେ ପଡବା । ଧାନ ଫୁଲ ଝଡିଗଲେ, ଧାନ ଗୁରସ ଖାଏଲେ ମାଛର ମିଠା ଗଲା । ଧାନ ଫୁଲ ଖିଆ ମାଛ ସବୁ ପିତା ଲାଗବା । ଛେଲିଆ ଆର ସମାରି କେନତା କରିଥିବେ କେ ଜାନି ? ଗବ ଗବ ଭାତ ସାଁଗେ କେତେ କଥା ଫୁଟୁଥିସି ଦିରଜୁର ମନେ ।

ଦିରଜୁ ପେଲଘେଇ ଦେସି ଆର ଦୁଇ ଖଁଡ ଝାଁଟି ଚୁଇଲକେ । ଆଏଜ କି କାଲ କେ ପୁନି, ଜନ ଉକିଆନେ ଦିଶି ଜଉଥିସି ହାଁଡି ର ଗୁଟା ଗୁଟା ଭାତ । ଭାତର ଖେଲ ତଲୁ ଉପର ଉପରୁ ତଲ । ଲାଖବିଁଧାର ତିଆସି ଦିନେ ଆଇଛେ ଦିରଜୁ ଗାଁନୁ, କରମା ସାରଲାକେ । ବଇଦ କେତେ କରି କହେଲା, ଦସଟା ଦିନ ତ ରେ ବାବୁ, ଚଲେଇ ଦେବୁ ଜେନତା ସେନତା । ବଏଦେନ ବି ମା ବାଗିର, ତେତେଲ ଆମୁଲ, ହେଁଡୁଆ, ବରି କେତେ କାନା ଦେଇଛେ । ଦେଖ ଜେ ମୁଗ ଦାଏଲ ବି ଦେଇଛେ ଗିଧେ ବାଗିର ।

ହେଲେ, ରାଁଧି ଖାଏବାକେ ବେଲ କାହି ? ସକାଲୁ ଉଠଲେ ତ ଚାଲ ପଥର ବୁହି, ତାହେଁରୁ ପଠାନ ମିସତିରି ଆସଲେ ତାଁକର ସାଁଗେ ଚାଲ ଇଟା ଧରାବାକେ, ଉପରବେଲି ପାଏନ ଦିଅ କି ବାଏଲ ଦୁହାର । ଟିକେ ବି ଠିଆ ହେବାକେ ବେଲ କାହିଁ ? ଏଡେ ବଡ ବାଦଲ ମହଲ ବନବା, ରଜା ଆଏବେ ବିଦେସନୁ, ରହେବେ । କେତେ ପାଠ ପଢିଛନ ଆମର ରଜା, ବିହା ଚୁରା ବି ହେବେ । ସିରମେଟ ହେବା, ରଁଗ ହେବା, ଆର ଆର କେତେ କାମ । ପୁଓ ପରଜା ନାଇଁ କରବେ ତ କରବା ଆରୁ କିଏ ?

ସେଥିର ଲାଗି ସବୁ ଗାଁ ନୁ ଆଇଛନ ଦିରଜୁ ମନେ । ଥରେ କେ ଦୁଇ କୋର ଲୋକ ଦସ ଦସ ଦିନ । ଜମିଦାର ମନେ ଗଁତିଆକେ କହେଲେ, ଗଁତିଆମନେ ପରଜାକେ କହେଲେ, ପରଜା ନିଜେ ଆଏଲା ତ ଭଲ, ନାଇଁ ହେଲେ ହଲିଆ କି ଭୁତେରକେ ପଠାଲା । ରଜାଘରର କଥା ଇ ଥି ଆର ଉଁ ଚୁଁ ନାଇ, କାମନେ ବି ଠଁକା ଭଁଡା ନାଇ ।

ବଇଦ ବିଚରା ନୁଆଁ କରି ପରଜା ହେଇଛେ ପାଁଚ ବରସ ହେଲା, ସେ ଆରୁ ଆସି ପାରବା କାଏଁ ? ରାତି ବିକାଲି କେତେ ଲୁକର ଦୁଖ ସୁଖ ବୁଝୁଛେ ବିଚରା, ସେ ଆର ଗାଁ ଛାଡି ଆସତା କାଏଁ ? ଆସଲେ ବି ଇ କାମ କରି ପାରତା କାଏଁ ? ଗାଁ ସଭେ କହେଲେ, ବଇଦ ବି କହେଲା କେତେ କରି, ହେତିର ଲାଗି ଦିରଜୁ ଆଇଛେ ବଲାଁଗେର ଗାଁ ଲୁକର ସାଁଗେ ଚାଏର ଦିନ ହେଲା ।

ଜେ ଜାର ଡିବି ଥି ସବେ ରାଁଧୁଛନ ଭାତ । କାଏଲ ଦିନଟା ସାରା ଚଲି ଜିବା ଇ ଭାତ । ରାଏତକେ ଫେର ରାଁଧ । କିଏ କିଏ ମେସି କରି ରାଁଧବା କେ କହୁଛନ ଜେ, ହେଡକି ହାଏଁଡ ଟେ ପାଏବ କାହୁଁ ? ତାହାକେ ଫେର ଇନ କେ ନିଅ, ସେନ କେ ନିଅ, ବଡା ଅସୁବିଧା । ହେଥିର ଲାଗି ଜାରଟା ସେ ବନେ ।

ଭାତ ଫୁଟଲାନ ଖତଖତ ଖତଖତ ।

କଅଁଲ ହେଇ ଜିବା କାଏଁ, ପାଏନ ଗଡେ ରୁକି ଦେଲା ଦିରଜୁ । ଗଲା, ତାଲ ପତର ଘରକେ, ଖମାନେ ଉଲା ହେଇଥିବାର ବୁଟକାନୁ ବାହାର କଲା ଆମୁଲ ଆରୁ ଉଇଲ । ଧାଡି ଧାଡି ଜଲୁଥିବାର ଚୁଇଲ ମନକର ଆଘେ ବସିଥିଲେ ଝନେ ଝନେ ଲୋକ, ହେମନ

କର ଆଡକେ ମୁହୁଁ କରି କହେଲା : ହଏ ବୋ ପରାସର, ମୋର ଭାତ ହେଇଗଲା ରେ ପିଲେ, କିଏ କିଏ ଆମୁଲ ଖାଏବ ବେଲେ କହ ?

******

ଜେନ ଦିନ ଦିରଜୁ ହଲ ଗାଡିନେ ବୁହାହେଇ ଆଏଲା ଗାଁ କେ, ତାର ଘରେ ଥାଟ ପଟାଲି ଲୋକ । ବଇଦ ବୁଢା ବି ଧାଇଁ ଆଏଲେ ସୁନୁନ ସାଏର । ସବୁ ସୁନଲେ ସବୁ ଦେଖଲେ, ନାଡି, ଆଏଖ, ମୁଁଡର ଖଁଡିଆ, ଅଁଟାର ଖଁଡିଆ । ହୁଁ ଧାପେ ଧାଇଁ ଆସଲେ ଘରକେ, ଆନଲେ ତିନ ଚାଏରଟା ଉସୋ । କହେଲେ, "ଏଇଟା ସକାଳେ, ଖାଇବ ଖିର ସାଂଗରେ, ଏଇ ସବୁକୁ ଫୁଟାଇ କୁଆଥ କରି ପିଇବ ଉସୁମ ଉସୁମ ଦିନକୁ ଚାରିଥର, ଏ ଛାଲି କୁ ଗୁଁଡ କରି ଖଁଡିଆ ଠି ଲଗାଅ, ରାତିରେ ଏଇଟା ଖାଇବ ଖାଇବା ପରେ । ଦେଖିବ ପାଁଚ ଦିନରେ ସବୁ ଠିକ ହେଇଜିବ, ଚିନହ ବି ରହିବନି । ହାଡ ଭାଁଗିନି ରକ୍ଷା ହେଇଛି, ସୁସୁମୁନାରେ ଖାଲି ମାଡ ହେଇଛି ବୋଲି ଡର ।"

ବାଦଲ ମହଲର ଦୁଇ ମହଲାନୁ ପଡିଥିଲା ଦିରଜୁ । ମୁଁଡ ଫାଟି ଥିଲା, ଆର ବି ଦିହି ସାରା ଖଁଡିଆ ଖାବରା । ଚେତା ବୁଡି ଜାଇ ଥିଲା । ଇଟା ସକାଲ ବେଲର  କଥା । ସଭେ ତ କହୁଥିଲେ ମରିଗଲାନ ଦିରଜୁ । ଭାଗ୍ୟକେ, ଗଁତିଆ ଘରର ଗାଡି ଜାଇଥଲା, ବାଲାଗେଁର ହଟଲି କେ ବାଇଗନ ବିକି । ଘାଟିନେ ଚେତା ଫିରଲା ବଲି କହେସି ପରାସର । ପରାସର କହେସି: "ବାଟେ ଖାଲି ଆମେ ମୁଡର ରକତ ପୁଛୁଥଉଁ ଆର ପାନି ପୁଛୁ ଥଉ ମୁହୁଁ ।" ସତକେ ସତ ଦିରଜୁ ଠିକ ହେଇଗଲା ସାତ ଦିନେ ।

କେତେ ଦିନ ଗଲାକେ ଦିରଜୁ ଆଏଲା ବଇଦର ଘରକେ । ଢୋ କରି ମୁଁଡିଆଟେ ମାଏଲା । କହେଲା : "ଜିବନ ମୋର ତୁଇ ବଁଚେଇ ଦେଲୁ । କାଣା ଅଛେ ଜେ ଦେମି ତତେ, କାନ ବୁତା କାଣାକରି ଦେମି ବଏଲେ କହ ?" ବଇଦ ଉସୋ ବଟି କରୁଥିଲେ, ମହକି ଜଉଥିଲା ଦୁଇ ବଖରିଆ ଘର ।

ବଇଦ କହେଲେ: "ମୋ ପାଇଁ ତୋର ଜିବନ ଜାଇଥାନତା ରେ,  ମାଁ କ ଦୟାରୁ ବଁଚିଗଲୁ । କଣ ଆଉ ତୁ ମତେ ଦେବୁ, ଆଜି ସତାବରି ମୋଦକ ହେଉଛି, ନେଇଜିବୁ ସେଥରୁ ଭାଗଟିଏ, ଦେଖିବୁ ଆହୁରି ବଳ ହେବ ସେଇଟା ଖାଇଲେ ।"

ଦିରଜୁ ହସିଦେଇ କରି କହେଲା : "ହଏ ଜେ ବଇଦ, ନେଇଥିଲି ଦସ ଦିନର ଭୁତି, ପାଁଚ ଦିନ କାମ କଲି ବଲାଁଗିରେ । ବାକି ପାଁଚ ଦିନର ଭୁତି ରହେଲା କି ନାଇ । ତାହେଁରୁ ଫେର ତମର ନୁଁ ତ ଉସୋ କସା ବି ଖାଇଛେ କେତେ ଟଁକାର ? ତମର ଲାଗି କିଛି ନାଇ କରି ଦେଲେ ଧରମ ସହେବା କାଏଁ ?"

"ଆରେ ସେଇଟା ଗରିବଙ୍କ ଔଷଧ, ମୁଁ ତାକୁ ତତେ ଦେଇ ମୋର ସ୍ୱାର୍ଥରେ

ଲଗାଇ ଦେଲି । ଛାଡ ସେ କଥା, ଏବେ ନେ ମାସକର ଔଷଧ, ଆଗ ଖାଇକି ଭଲ ହୁଅ, ଏତେ ଉଚ୍ଚରୁ ପଡିଛୁ,ସୁଷୁମ୍ନାରେ ଆଘାତ ଲାଗିଛି, ଏବେ ଜାଣିପାରୁନୁ, ଅଣ୍ଟା କାଟୁଛି ନା ?" – ବଇଦ କହେଲା ।

ହେତକି ବେଲେ ଏକା ଆଏସି ବଇଦେନ । ବଇଦେନ କହେସି: "ଦିରଜୁ, ତମର ଇ ବଇଦର କଥା ନାଇ ସୁନ । ଇ ଉସୋକସା ନେ ଖାଇଦେ ଆର ଇ ମାସକ ଲାଗି ପାଟି କରି ଆମର ଇନେ ଢବା ଦୁଇ ବଖରା ନାଇ ବନାଲେ ନାଇ ଚଲେନ । ଇ ସିତ କାକରେ, ଖରା ବରସାନେ ପାଁଚ ପରାନି ଛୁଆ ପିଲାକେ ନେଇ କରି ରହେବାର ଟା ଇ ଲୋକ କାଏଁ ଜାନନ ? ରାଏତ ନାଇ ବିକାଲ ନାଇ ଗାଁ ଗାଁ ପଲଉଛେ ଲୋକ ଡାକଲେ । ମୁଇଁ ସିନା ପଡି ରହିଛେ ଇ ଝାଟି ମାଟିର ଘରେ । ଆର ଚାଏର ପାଁଚଲୋକ କେ ବି ଡାକ, ମୁଇଁ ବୁଝମି ଭୁତି ଭରାର କଥା ।"

ବଇଦ ଉସୋ ଗନୁଥିଲା । ଗନି ସାରି କରି ଧରେଇ ଦେଲା ଦିରଜୁର ହାତେ । ହସି ହସି କରି କହେଲା: "ବୁଝିଲୁ ଦିରିଜୁ, ଘରଣୀ ମାନେ ଘର । ମଣିଷକୁ କେମିତି ବାନ୍ଧିବେ ମାଇପେ ଜାଣନ୍ତି ।"

ଦିରଜୁ କାଣା ବୁଝଲା କିଏ ଜାନେ, କହେଲା : "କାଲକେ ତ ଗୁରବାର । ଆମେ ଆଏମୁ ସିନେ, କି ପାଁଜି ପୁଁଜା ଦେଖାବ ? ପହେଲେ ନାପ ଜୁଖ ତ କରି ଦେମା, ଝାରୁ କାଠ ଖୁଁଟ ତ ଠୁଲାମା ।"

*******

ଜେଭେ ବି ଦେ'ଗାଁର ପନିସୁଗର ନୁ ପେଲେସକେ ଆଏସି ଅବିନାଶ ଇ ସବୁ କଥା ତାର ସୋର ପଡୁଥିସି । କେତେ ଥର ଇ ସବୁ ବୁଢିମାନୁ ପିଲା ଦିନେ ସୁନିଛେ । ବୁଢିମା ତାର ଜିବନେ ଗୁଟେନ କାମ କରିଛେ ତାର ବୁତେ, ସେଟା ଇ ଢବାଘର । ବଡ ରେନଗାଲ ଗଛର ଗୁରା ହେଲା ଦଲମ । ଦଲମ ଉପରେ ମାଏଟ ଲିପି କରି ପଟା ହେଇଛେ ଢବା ।

ଜେତେ ବେଲେ ବି ଢବାଘରର କଥା ପଡସି ବୁଢିମାର ମୁହୁଁ ଜଲୁଥିସି ଦପଦପ । କହେସି : "ଇ ଘର ବଖରେ ନାଇ ଥିଲେ ତ ଭାସି ଜାଇ ଥିତେ କୁଟୁମ ?"

ଅବିନାଶ ଜେଭେ ବି ଆଏସି ପେଲେସକେ ଖୁଜି ହଉଥିସି, କେନୁ ପଡିଥିବା ଆମର ଦିରଜୁ ।

ସାଠେ ବରସ ଗଲାନ ହେଲେ ଅବିନାଶ ଆଝିର ଖୁଜୁଥିସି, କେନେ ରାଁଧି ଖାଇ ରହୁଥିଲେ ଦିରଜୁମନେ ? ଆର କିଏ କିଏ ପଡି ଜାଇଥିବେ କାଏଁ ଇ ବାଦଲ ମହଲର ଟିପିନୁ, ସିରମେଟ କଲାବେଲକେ, ରଁଗ ଦେଲା ବେଲକେ ? କେନ ଗାଁ ଗଁତିଆର, କେନ ଗାଁର ଜମିଦାର ର ସଗଡେ ବୁହାହେଇ ଜାଇ ଥିବେ ହେମନେ ? ବଁଚି ଥିବେ କି ନାଇ କିଏ ଜାନେ ?

ବୁଢ଼ିମା ଦିରଜୁନୁ ସୁନିଥିଲା ବାଦଲ ମହଲର କଥା । ଲୁହାର କଡ଼ି, ସାଗୁନ କାଠର ଦଲମ, ସବୁଆଡେ ପାଲିସ ଚକ ଚକ । ପଉଁଚ ଉପରେ ପଉଁଚ ଉପରକେ ଉପରକେ । ରଜାର ଦରବାର, ରାନିର ମହଲ, ଗାଧବାର ଘର, ଖାଏବାର ଘର ଅଗନତି ବଖରା ବଖରା ।

ଏଭେ ବି ଅବିନାଶକେ ପଚରାସି ବୁଢ଼ିମା: "ବାବୁରେ କେନତା ହେଇଛେ ବାଦଲ ମହଲ ? ପଁଚାନବେ ବରସ ହେଲାନ ତାହାକେ ଭଲ କରି ନାଇ ସୁନେ କି ଭଲ କରି ନାଇ ବୁଝେ, ହେଲେ ବଲାଁଗେରର କଥା ପଡଲେନ ପଚରାସି ବାଦଲ ମହଲର କଥା ।"

ଅବିନାଶର ବାପା କହେସନ : "ମୁଲୁନ ଆମର ମାଁର ଇଟା ଗୁଟେନ ଲବଜ । ସତେ ଜେନତା ସେ ଭାବସି, ତାର ଇ ଢବାଘର ଆର ରଜାର ବାଦଲ ମହଲ ପିଠୁଆଁ ଉଠୁଆଁ ଦୁଇ ଭାଇ ?"

ଅବିନାଶ ବି ବୁଝେଇ ନାଇ ପାରେ ତାର ବୁଢ଼ିମା କେ, ଦେସ ସୁଆଧିନ ହେଲାନ, ରଜାପନ ଗଲାନ, ଜେନ ରଜା ଲାଗି ବନାହେଇଥିଲା ଇ ବାଦଲ ମହଲ, ସେ ବି ମରି ଗଲେନ । ଏଭେ ତାଁକର ପୁଓ ନାତିମନେ ଦୁଇ ଭାଗ କରିଛନ ବାଦଲ ମହଲକେ । ଦୁଇଟା ବାଟ ବି କରିଛନ, ଅଲଗ ଅଲଗ ଦୁଇଟା ରାଜନିତିକ ଦଲେ ବି ମିସିଛନ । ଅବିନାଶ କେ ବଡା ଅଡୁଆ ଲାଗସି ଭାବିକରି ଜେ, ବାଦଲ ମହଲ ଏଭେ ଭଡା ଲାଗିଛେ ପନିସୁଗରନେ । ହେଲେ ଇ କଥା କହିନାଇ ପାରେ ତାର ବୁଢ଼ିମାକେ । କେତେ ଦୁଖ ହେବା ତାର ମନେ ଇ କଥା ସୁନଲେ ?

ଥରେ ଭୁତଭୁଡିଆ ଅଁଧାରେ ବଲାଁଗେରୁ ଫିରିକରି ଅବିନାଶ ପଚରାଲା ବୁଢ଼ିମାକେ : "ବାଦଲ ମହଲ ଜିମା କାଏଁ ଗୋ ବୁଢ଼ିମା, ମୁଁ ତ କେଭେ କେଭେ ଜଉଛେ , ମୋର ସାଁଗେ ତ ଜିବୁ ?' ଦେଖି କରି ତ ଫିରି ଆଏବୁ ।"

ବୁଢ଼ିମା ଫଁ କରି ନିସାସଟେ ଛାଡଲା ଆର କହେଲା : ନାଇରେ ପୁତା, ମୁଇଁ ନାଇ ଜାଏଁ । ରଜା ଘରକେ ସବୁବେଲେ ଜିବାର ଟା ଭଲ ନାଇ ସେ । ରଜା ଗୁଜା ଲୋକ ବେଲ ଅଛେ କାଲ ନାଇ, ତୁଇ ବି ସବୁ ବଲେ ନାଇ ଜା । କେତେ ଲୋକ କେତେ କଥା କହେସନ – ବାଦଲ ମହଲ ସମକୁ ନାଇ ସୁଝେ, ଦିରଜୁର କଥା ତ ଜାନିଛୁ ..

ଅବିନାଶ ହଁସସି, କିଛି ନାଇ କହେ । କେତେ କସଟେ କୁହା କୁହି ଥି ମିଲିଛେ ଇ ପନିସୁଗରର ଚାକିରି । ଦରମା ଦୁଇ ହଜାର ଟଁକା, ମଟର ସାଇକଲେ ବୁଲି ଲୋକକୁ କୁସେର ଚାସ କରବ ବଲି ବୁଝାବାରଟା ଖାଲି କାମ । ମାସକ କେତେ ଥର ଜିବାକେ ପଡସି ପେଲେସର ଅଫିସକେ । ହେଥି ଡରବାର କାଣା ଅଛେ ? ସେ କାଣା ଭାଗ ମାଗି ଜଉଛେ କି ଜୁଧ କରି ଜଉଛେ ରଜାଘରକେ ?

ବୁଢ଼ିମାକେ ବିରଝୁ ବଲି କହେସି ହଏଗୋ ଆମର ତ ଦୁଇ ଏକଡ ବଲି ଜମିନ, ହେଥୁ ଆମର ଭାଗେ ପଡବା ଏକଡେ ନୁ ବି କମ । ଚାକରି ନାଇ କରମି ତ ଖାଏମା କାଣା ?

ବୁଢ଼ିମା ମୁହୁଁ କଲା ପଡି ଜାଏସି , କହେସି – "କହେମି ରେ ବାବୁ କହେମି, ତତେ ହେଲେ ଆର ଦିନେ.. ଆମର କେତେ ଜମିନ ଥିଲା, କେତେ ଦୁଖ ତାହାକେ ଆମେ ...."

ଅବିନାଶର ବାପା ସେ ଆଉ କହେସନ ବିରକତ ହେଇକରି : "ମାର ସାଁଗେ କାହି ଲାଗିଛୁରେ ଅବିନାଶ, ତାର ତ ସୁଇବାର ବେଲ ହେଲାନ ।"

ଦୁଆରର ଜନ ଉକିଆନୁ ଦେଖଲେ, ଗାଁର ମିଟ ମିଟ ଇଲେକଟିରି ଲାଇଟ ଉକିଆ ଥି ଆମର ଇ ଢବାଘର ଦିଶୁଥିସି, ମଁଦିର ବାଗିର । ସେନେ ସବୁବେଲେ ଦେବି ମୁରତି ବାଗିର ଧୋବ ସାଢ଼ି ପିଁଧି କରି ବସିଥିସି ତାର ପଟାଖଟେ ବୁଢ଼ିମା, ସିତ ଖରା, ସୁଖ ଦୁଖ ସବୁ ସହି ସହି ।

ଢବାଘରର ପଛ ଫାଲେ ଉଡୁଥିସନ ଜୁଲଜୁଲିଆ ପୋକ । ଇନେ ସେନେ ତୁପା ହେଇ ଥିସି ଅବିନାଶ ଆର ତାର ଭାଏ ବହେନ ମାନକର ନାହିନାଡ । ଜନମ ଦିନେ ବୁଢ଼ିମା ଚିନହେଇ ଦେସି କେନଟା କାର । ବୁଢ଼ିମା ସବୁ ବେଲେ କହେସି ଢବାଘର ଜାହା ହେଲେ ବି ଢବାଘର ।

ଇତାର ଆମ ଖାସେ ଏକା ବୁଢ଼ିମା ସୁଇସି କାଏଁ ଖରା କାଏଁ ସିତ ।

*******

ଅବିନାଶକେ ବୁଢ଼ିମା କହେସନ : "ଜମିନର ପଛେ ନାଇ ପଡି ତୋର ବୁଢ଼ା ବାପା କେଭେ ବି । ବଇଦ ବଲି ଡାକ ପଡୁ ଥିଲା ବାର ଖଁଡ ଗାଁ ଥି । ବୋଇରାନିନୁ ବିନକା, ବରଲା ନୁ ପାଁଢେଲ । ସବୁ ଠାନେ ତାଁକୁ ଜମିନ ଜାଚି ଥଲେ ଗଁତିଆ ମନେ । ଇନେ ତ ଚାଏର ଟା ହଲର ଜମି ବି ଆମେ କମଉଥିଲୁ ପାଁଚ ବରସ । ଜେନ ବରସେ ରଜା ଘରର ବାଦଲମହଲ ଲାଗି ଦିରଜୁକେ ପଠାଲେ ବଇଦ, ମୁଇଁ ଏକା ଲାଗି ଲାଗି କରି ବନାଲି ଢବାଘର, ହେ ବରସେ ଏକା ସେ ଛାଡି ଦେଲେ ଜମିନ । ମାଏଟ ଆର ଧନ ବାଁଧି ଦେସି ମୁନୁସକେ ଗୁଟେ ଠାନେ, ବଇଦ ଗୁଟେ ଠାନେ ରହେବାର ଲୋକ ନାଇ ଥାଇ ।"

ଅବିନାଶ ସୁନିଛେ, ବୁଢ଼ିମା ଢବାଘର ବନାଲା ବେଲକେ ଏକା, ଖରାଦିନିଆଁ ଗୁଟେ ରାତି, ଗଁତିଆକେ ଭେଟସନ ବଇଦ ଗାଁ ଖୁଲି । ଗଁତିଆ ବସିଥିସି ଗାଁ ମଝିନେ ଗୁଟେ ଖଟେ । ବଇଦ କହେଲେ : "ଆମେ ସେ ଜମି ଆଉ ଚାଷ କରିପାରିବୁ ନି ହେ ଗୌତିଆ । ତମେ ଆଉ କେଉଁ ନୁଆଁ ପରଜାକୁ ତାହା ଦେଇ ଦିଅ ।"

ଗଁତିଆ ବୁଢ଼ା ଚମକି ପଡସି ଇଟା ସୁନିକରି । ଚାଏରଟା ହଲର ଜମି, ବାହାଲ

ଆର ବେରନା ମିସେଇ କରି ସୋହଲ ଏକଡ, ଆଁଟ ଖାଲି ତିନ ଏକଡ, ଛାଡି ଦଉଛେ ଇ ବଇଦ । ପାଗଲଟେ କାଏଁ ? ଭାଲୁ ବାହାଲି ଜମିର ଲାଗି ପରଜା ଅଭାବ ନାଇଁ ହୁଅନ, ଇଛେନ ଜମିନ ଦେମି ବଏଲେ, ଭେଟି ଧରି କରି ଧାଇଁ ଆସବେ ଦସ ପଁଦରଟା ପରଜା । ହେଲେ ବଇଦଟେ ଗାଁ ଛାଡି ପଲାବା ଇଟାକେ ଏକା ଡର । ବିପଦ ଆପଦନେ ରାତି ବିକାଲି ଧାଇଁ ଆସୁଥିଲା ଲୋକଟା । ଗାଁନେ ପିଲା ମନକୁ ବି ଠୋଲ କରି କରି ସିଖଉଥିଲା ନାଟ କିରତନ । ଦଖିନି ଲୁକର ଗୁନ ଏକା ଅଲଗା ।

ଗଁତିଆ ବୁଢା କହେସି : "ହଏବୋ, ବଇଦ କାଣା ଅସୁବିଧା ହେଲା ଜେ ସେଟା ତ କହ ?"

ବଇଦ ହସିଦେସି । ବଇଦର ହଁସି ଗୁଟେ ଅଲଗା, ଜେନତା ତାର କଥା । ମୁଡେ ଝାଁପୁର ଝାଁପୁର ବାବଲି ବାଲ, କପାଲେ ସିଁଦୁର ଟିକା । ଗାଁ ଖୁଲିର ଜନ ଉକିଆ ଥି ଝଲ କରି ଦିସି ଜାଏସି ବଇଦର ମୁହୁଁ ।

ଗଁତିଆ କହେସି : "ବସ, ବଇଦ ଇ ଖଟେ ବସ । ଇ ଥର କେତେ ଝନ ସିଖୁଛନ କିରତନ ? ଦେଖ ଜେନତା ହଉ ଇ ବଏସାଖର ପୁନିକେ ଅସଟପହରିଟେ କରମା । ଆମର ସାନ ବାବୁ ମୁରଦୁଂଗ ସିଖୁଥିଲା,ବଜେଇ ଜାନଲା ନ ଟିକେ ଅଧେ ?"

ଏତକିଟେ କଥା , ଏକା ଥରକେ ? ବଇଦ ସୁନି ସୁନି ଗଁତିଆର ମୁହୁଁକେ ଦେଖୁଥସି କିଛି ନାଇ କହେ । ଅଧରାତିଆ କୁଲହିଆ ନାଲ ଖଡିନୁ ହେତକି ବେଲକେ ଏକା କରସନ ହୁକେ ହୋ.. ହୁକେ ହୋ ।

ବଇଦ କହେସି : "ବଇଦି ଆଉ ଚାଷ ସମ୍ଭବ ନୁହେ, ଜମି କଣ ହେବ ହେ । ଆଜି ଜମି ଥିଲା ବୋଲି ମୁଁ  ଦିରଜୁକୁ ଗୋଟି ପଠେଇଲି ରାଜା ଘର । ମରୁ ମରୁ ବଁଚି ଗଲା ବିଚରା । ଜମି ଦେଇଛ ବୋଲି ତମ ଗବା ପୁଅକୁ ମୁଁ ଶିଖାଉଛି ମୃଦଙ୍ଗର ଶାସ୍ତ୍ରୀୟ ତାଳ ଓ ମାନ । ଜମି କଣ ହେବ ହେ ମଲା ବେଳେ କିଏ ନେଇ କି ଯିବ ଜମିକୁ । ମଶାଣିରେ କେତେ ମାଟି ଲୋଡା ମଣିଷକୁ ? ବ୍ରାହ୍ମଣ ପୁଅ ବିଦ୍ୟା ସାଧିବା କଥା, ଜଗତର ଉପକାର କରିବା କଥା । ତମର ଜମି ଥିଲେ ରାଜାର ପ୍ରଜା ହେବ , ମହାଜନର ଖାତକ ହେବ । ମୁଁ ଆଉ ତମ ଜମି ଚଷିବିନି, ତାକୁ ଯାହାକୁ ଦେଉଛ ଦିଅ ।"

ହେ ଦିନ ରାତି ଗଁତିଆର ବସଲା ଖଟୁ ଉଠି ଆସିଥିଲେ ବଇଦ । ପଛେ ଗଁତିଆ ବୁଢା ପରେ କହେଲେ – ବାମହନର ଉରାଟ ଦେଖ । ମତେ କାଣା ପରଜା ନାଇଁ ମିଲନ । ତୁଇ ତ ଘର କଲୁ ନ ଇ ଗାଁ ନେ ରହେବୁ କିନି ନାଇ ଦେଖମା ?

ବୁଢିମା ଏତକିନ କହେସି । ଅବିନାଶ ଜାନି ନାଇ ପାରେ ତାହେରୁ କାଣା ହେଲା । ସେ ଥର ଆର ବଇଦ ଜମି କମାଲେ କି ନାଇ । ଗଁତିଆର ବୁଢା ସାଁଗେ ଆର ଭାବ ରହେଲା

କି ନାଇ ବଇଦର ? ବୁଢିମାକେ ଜେତକି ଖୁନଦି ଖୁନଦି ପଚରାଲେ ବି କିଛି ନାଇ କହେନ । ଥରେ ଥରେ ତ ଆଖି ଛଲ ଛଲ ହେଇ ଜାଏସି, ଇ ବଏସେ କାଁଦିବି ଦେସି ।

ଅବିନାଶ କେତେ ଲୁକର ନୁ ସୁନିଛେ କେତେ କଥା । କିଏ କିଏ କହେସନ, ବଇଦ ମରିଗଲେ ସେ ବରସେ ଆସାଡ ପୁନି ଦିନର ରାତି । ଟୁଁଡୁ ବାହାରୁଥାଏ ମୁଡା ମୁଡା ଫେପଲ ।

ଲୋକ କହେସନ, ଅଧରାତି ଫିରୁଥଲେ ରୁଗି ଦେଖିକରି ସାଁପ ଚାବିଦେଲା ବଇଦକେ ।

ଲୋକ କହେସନ, ସତାବରି ମୋଦକ ବଲି ଖାଇ ଦେଲେ ମହରାର ଠିକଡି ଗଁଜେଇର ସୁରେ ।

ଲୋକ କହେସନ, ଇ ଡବାଘର ନାଇ ସୁଝଲା ବଇଦକେ ।

ଲୋକ କହେସନ, ଭଲ ଲୋକ ମନେ ବେସି ଦିନ ନାଇଁ ବଁଚନ ଇ ପୁରଥିଥି ।

ଅବିନାଶକେ ତାର ସାଁଗ ମନେ ଜେନ କହେସନ, ତୁଇ ବଢେ ଜିଦି ବଲି, ଇଟା ତା ହେଲେ ହେ ରକତର ଦୋସ ।



# ମରଡି ଆର ମାଛ

ଇଟା ଗୁଟେ କଥାନି ନୁହେସେ । ଗୁଟେ ସତ କଥା ।

ଜେନ ଦିନ ପୁରନିବଁଧର ମାଏଟ ଫାଟିଗଲା, ଆମର କପାଲ ବି । ଲୋକ, ମାଏଝି, ଛୁଆପିଲା, ଏଡେ ବଡ ଛ' କୋର ବସତିର ଗାଁ ଆମର, ପାଏନ ଟିକେକର ଲାଗି ବଢେ କଲବଲ ହେଲେ । ଗଲା ଦୁଇମାସ ହେଲା ଲୁକେ ତେଲ ବାଗିର ମାଖି ଅଉଥିଲେ ପାଏନ । ଇ ବଁଧର କଁଚା କାଦୋ କେ ବଲୁଥିଲେ ଇଟା ଏକା ଆମର ପାଏନ-ପରାନ । ସେଟା ବି ସରି ଗଲା ।

ଗାଁର ମଝା ଖୁଲି ଗୁଟେ ବଲି ନଲଚୁଆଁ । ସେନେ ଦୁଇ ଘଡି ବେଲ ହାଚକି ହେଲେ ଅଧାଗରିଆ ପାଏନ । ଝନେ ଜଦି ଠିଆ ହେବା ଧାଡିଥି କବାର ବୁତା ଛାଡିକରି ସକାଲୁ ଦୁଇ ପହର ତକ ପାଏନ ପାଏବା ଗରିଏ କି ଦୁଇ ଗରିଆ । ସେ ଟା ତ ଭାତ ରଁଧା ଆର ପିଆଖିଆ କେ ନାଇଁ ଅଁଟେ । ଆରୁ କିଏ କେନୁ ପାଏବା ପାଏନ, ଗାଧବାକେ ପାଧବାକେ ଆରୁ ଆରୁ କାମ ଲାଗି ...... ।

ଦିନେ ଦୁଇ ଦିନ ନାଇସେ, ମାସ ମାସ, ଅଗାଧୁଆ ଅପାଧୁଆ ସବୁ ଲୁକର ଦିହେ କେନତା ଗୁଟେ ବିଚକିଟିଆ ଗଁଧ । ଗଁଧ କେ କି କାଣା ଜେ, କେନୁ ଜୁଟି ଗଲେ ଗୁହୁଡା ଗୁହୁଡା ମାଛି । ଜେନେ ଜେତେ ବେଲେ ଦେଖ, ଭନଭନ ଭନଭନ । ଗାଁ ସାରା ଜେନତା ନାମ ସଂକିରତନ ଚାଲିଛେ ଦିନରାଏତ । ଗାଁ ଟା ଜେନତା କୁହି ବିଲି କରି ରନଭନଉଛେ । ପହେଲେ ତ' ପାଏନ, ଖାଏଦ କେ ଡାପିକରି ରଖୁଥିଲୁଁ ମାଛିର ଡରହେ । ପୁଜାର ଫୁଲ ମନକୁ ଚାଁଘରି, କଅଁଲା ପିଲା ମନକୁ କପଡା ଡାପି କରି ରଖୁଥିଲୁଁ । ପୁରଥି ଜାକର ସବୁ ମାଛି

କାଣା ଗଦା ହେଇଗଲେ ଆମର ଗାଁ ନେ? ମାଛି ସମି ଜିବେ ବଲି ଡରୁଥିଲୁଁ, କଥା କହେବାକେ ଦିନ ବେଲେ । ଥରେ ତ କିଏ ଝନେ ଟୁଁଡ ଖୁଲଲାଜେ ଚଁଡୁ ପୁଟା ତକ ହୁଡ ହୁଡ କରି ପୁରତୁନ ହେଇଗଲେ ମାଛି । ଦିନ ହେଲେ ନ ଲୁକେ ଠରାନରାନେ ଚଲାସନ କାମ, ରାତି ଗାନା ବାଜନା । ମାଛିକେ ଡରି ମରି କରି ସଭେ କୁଁଦା । ପହେଲା ଦଲ ମାଛି ଦେଖି କରି ଲୁକେ ଭାବୁଥିଲେ, ହାଦେ ମେଘ ଆଏଲା, ବରସିଦେବା ଜେ ଆମର ଦୁଖ ଜିବା । ହଁସି ଖୁସିନେ କିରତନ କଲେ, ଫୁଲ ମାଲ ଧରି କରି ନାଚଲେ, ଆ'ରେ ବରସାରାନି ଗିତ ଗାଏଲେ । ହେଲେ, କଲା କିଟ କିଟ ଅଁଧାର ବାଗିର ଆସତେ ଆସତେ ଛାଇ ହେଇଗଲେ ମାଛି, ଦିନ ବି ଅଁଧାର ହେଇଗଲା ମାଛିର କାଜେ । ଲୁକେ ଅଁଧାରେ ବି ଟାମଡି ହାତଲି ହେଇ କରି ବଁଚି ଗଲେ, ବଁଚି ଜଉଥିଲେ ।

ଟୁଁଡ ମୁଁଡ ବଁଦ, ସବୁଆଡେ ଅଁଧାର କିଟ କିଟ, ତବ ଭି ଲୋକ ବଁଚି ଜଉଥିଲେ । ଭାଇ ଭାଇ ମାଡ ମରଦନ ଲାଗି କରି ପୁଲିସକେ ଜଉଥିଲେ । ନିଏ ପାଏମୁଁ ବଲି ଉକିଲ ମୁକତିଆର ଧରି କୋଟ କଚରି ଧଁଉଥିଲେ, ଚୁଆଁ କୁଡମୁ ବଲି ଜମିନ ବାଡି ବଁଧା ଦେଇ କରି ଲାଁଚ ଦଉଥିଲେ ଆର ଟାକୁଥିଲେ ବୁଢାହେଇ କରି ମରବାର ତକ । ମନତିରି ଆଏବେ ବଲି କରି କିରତନ କରୁଥିଲେ ରାଏତ ସରତା, ସକାଲୁ ଜେ ଜାର ଘରକେ ଫିରୁଥିଲେ ହଁସି ହଁସି । ଫିରେଇ ଆନୁଥିଲେ ଚଉକି, ଟେବୁଲ, ଫୁଲମାଲ, ଧୁପକାଠି ଆର ନଡିଆ ।

ଦିନେ ଗାଁନେ ସଭା ହେଲା । ସୁକୁରୁ ଆର ଡୁଗୁରୁ କହେଲେ:(ସବୁ କଥା ଠରା ନରାଥି, ଟୁଁଡ ଖୁଲଲେ ତ ସମିଜିବେ ମାଛି) 'ଇ ମାଛି ମନକର ଲାଗି ଗୁଟେ ବଟେନ ଦରକାର । ଗୁଟେ ମାଛି ଆନବ, ତାହାକେ ସିଁଦୁର, କଜଲ ମଖାବ । ସାତଟା ବେଲ ପତର, ସାତଟା ତୁଲସି ପତର, ସାତଟା ଦହନା ପତର ହେଲା ଏକୁସଟା । ସେ ଏକୁସଟା ପତରକେ ବନାବ ଗୁଟେ ଚିପଟି, ମଝାଥି ରଖବ ମାଛିକେ । ଧୁପ ଦେବ ଦିପ ଦେବ, ଭୋଗ ଦେବ ରାଗ ଦେବ । ପୁଜା ପାଠ କରବ, ସବୁ ଦେ ଦେବତା ନାଁ ନେ ପାରଥନା କରବ, ମସାନ ପିତର ନାଁ ନେ ମୁଡିଆ ମାରବ ଆର ଉବଟିଆ ବାଟକେ ନେଇକରି ଛାଟି ଆଏବ । ଦେଖବ, ସେଦିନ ଏକା ସବୁ ମାଛି ସାଫ ।'

ପଁଡିତ କହେସନ ସଭାନେ (ହେ ଟା ବି ଠରା ନରାଥି, ମାଛିର ଡରହେ କିଏ ଖୁଲିପାରବା ଟୁଁଡ) : 'ସାଠେ ମାନ ଘି ହେବା, ଆହୁତି ପଡବା ଚାମୁଁଡାର ନାଁ ଥି, ଜପ ହେବା ମହା ମୁରତୁନଜଏ ମନତର । ଜତ ଜତ ଧୁର ତକ ଜଉଥିବା ସେ ହୁମର କୁହୁଲା, ଇ ମାଛି, ଇ ପାପ, ଇ ଅନିଏ, ଇ ଅବିଚାର ଛାଡି ଛାଡି ପଲଉଥିବା ।'

ଜଉତିସ ବୁଢା କାଣା କହେମି କହେମି ହଉଥିଲେ, ହେଲେ ଆଗ ଧାଇଁ ଆଏଲା, ସଭାର ପଛେ ବସି ଥିବାର ହରିବୁଲ ଭଁଡାରି । ବିଚରା ଝନେ କବି ହେଲେ, ଟିକେ ଖେନା ।

କହେବାକେ ନାଇଁ ଡରେ କେଭେ । ଇ ମାଛି କାଛି ସବୁର ଭିତରେ ବି ଟୁଁଡ ଛାପକି କରି ହେଲେ କହେସି । କହେଲା : "ଭାଇ ମମନେ ସମକୁ ମୋମୋର ଜୁହାର । ମୁଁ ହେହେଲି ସେବାକାରି ଲୋକ । ଛୋଟ ମୁହେଁ ଗୁଟେ ବଡ କଥା । ଆଁ ଆଁ କଲେ ସିନା ସମିଜିବେ ମାଛି ଟୁଡେ, ହେଲେ, ଜଦି ଗୁଲି ଫୁଟାଲା ବାବାଗିର ବାହାରୁଥିବା କଥା ହରଦମ, ଇ ମାଛ ଆମକୁ ଆର କାଣା କରବେ । ଦିନେ ଆସ ବୋ, ଗାଁ ଜାକର ଲୋକ ଠୋଲ ହଉଁ ଗୁଟେ ଠାନେ, ମୋର ମନତରନେ ମୁଇଁ ଖେଦି ଦେମି ସବୁ ମାଛି ଇ ଗାଁନୁ । ମାଛି ବଏଲେ କାଣା ବୋ,

ମୋର ଦିହର ଗଁଧକେ ତୁଇ ମାଛି,
ତୋର ଦିହର ଗଁଧକେ ମୁଇଁ ମାଛି,
ଗାଁ ଟା ଜାକର ଆର ମୁନୁସ ନାଇଁ,
ସବୁଆଡେ ଖାଲି ମାଛି ମାଛି, ମାଛି ମାଛି ।"

ହରିବୁଲର କଥାକେ ସୁନିକରି ସଭେ ହସଲୁଁ । ମେମର ବୁଢା ଠାରି କରି କହେଲା: 'ଆରୁ ପାଏନ ?'

"ଆର ପାଏନ ? ପାଏନ ବି ଅଛେ । ପୁରନି ବଁଧର ମାଏଟ ସିନା ଫାଟଲା,ତାର ତଲେ କାଣା ପାଏନ ନାଇଁନ ? ରଫେ ରଫେ ସବେ କୁଡଲେ ପାଏନ ରେ ପାଏନ ! ହେଲେ, ଭୁବନେସରୁ ଟଁକା ଆଏବା ବଏଲେ ଟାକିଥା ରେ ବାବୁ, ଆର ପାଁଚ ବରସ ।"

********

ସେ ଦିନୁ କୁଡେ ବରସ ହେଇ ଗଲାନ , ଇ ଗାଁ ଆର ସେନତା ନାଇନ ।

ଆମେ ବି ବଦଲିଛୁଁ । କେଭେ କେଭେ ପାଏନ ବରସିଛେ, ଧାନ ପାଚିଛେ । ପୁରନି ବଁଧେ ଫୁଟିଛେ କଇଁ ଫୁଲ । ଏଭେ ଏଭେ ପଦମଫୁଲ ବି ଫୁଟଲାନ ଗୁଟେ ଗୁଟେ କନେ । ମାଛି ଆରୁ ଇ ଗାଁନୁ ନାଇ ଜିବାର ନ । ସେ ବରସ ଜେନ ସହରୁ ଆସଲା ଗାଡି ଗାଡି ପାଏନ, ବାଁଟି ଦେଇଗଲା ଦୁଆର ଦୁଆର , ସେଟା ଏଭେ ବି ଚାଲିଛେ । ଗାଡି ପାଏନ ନାଇଁ ଆସଲେ ରଁଧାବଢା ବଁଦ, ଗଧାପଧା ବଁଦ । ପିଆ ପିଇ ଲାଗି ପଉଚ ପାଏନ, କେତେ ଲୁକର ତ ଦିନର ଲାଗି ଅଲଗା ପଉଚ, ରାତିର ଲାଗି ଅଲଗା ପଉଚ ।

'ସରକାର ମାହାପୁରୁ, ଆମକୁ ଏତକିଟେ ଦଉଛନ କାଁ କରି ବୋ ?' କେଭେ କେଭେ ହରିବୁଲ ପଚରାସି । ଇ ଗାଁର କିହେ ଇଟା ନାଇ ଜାନି କି ନାଇ ଭାବି, ଇ ଚଉଲ, ଇ ଛତା, ଇ କମଲ, ଇ ଜୁତା । ତିରଥ ଜ, ଡାକତରଖାନା ଜ, ଇସକୁଲ ଜ, ସସାନକେ ଜ, ଜାହିଁ ଜ ତମକୁ ସରକାର ପଏସା ଦେବେ ।

ହରିବୁଲ ନିଜ କେ ନିଜ ପଚରାସି: 'ସରକାର କେନୁ ଆନୁଛେ ଇ ସବୁ, ଆମର ନୁ ତ ନଉଥିବା ? ଇ ଦେସ ତ ବିକୁଥିବା କି ଲାଗ ବାଏର କରୁଥିବା ? ସରକାର କେ ଆମେ

ଦଉଛୁ କାଣା ଜେ ? ପାଁଚ ବରସେ ଥରେ ବଲି ଭୋଟ, ଆମ କୁ ପାଁଚ ବରସ ଚଲ ହୋ ! ସରକାର ବୁପରା ଆମକୁ କାନା ନାଇଁ ଦେବାର ? କେନୁ ଆନୁଛେ ଇ ସବୁ , ତାର ତ ଫେର ପେଟଟେ ଅଛେ, ଗାଡି ମଟର ଅଛେ......' ହରିବୁଲ ଆରୁ ଆରୁ ବୁଢା ହେଲାନ, ତାର କଥା ବୁଝି ନାଇ ପାରବାର କିହେ ବି । ପିଲା ବେଲୁ ଏକେ ତ ଖେନା ।

ହରିବୁଲର ପୁଓ ଜଗନ ସେଲୁନ ଦେଇଛେ ଗାଁ ମୁଁଡସେ ।

ବରକିଆ ଲଗାନି ନାଇ ଚଲବାର ନ ଆରୁ ଗାଁନେ । ସେଲନୁକେ ଜିବ ତ ପଏସା ଧରି କରି ଜ । ଛର ଭଦର ହେଲ, ପଏସା ଦେଲ ଆସଲ । ପଁଡିତର ପୁଓ ପଦମନ ବି ଦେଇଛେ ତାର ପାଖେ ଗୁଟେ ବଏଲର କୁକୁରାର ଗୁଡା । ଭେଜି ହେଲେ ଜାଇ ମିଲୁଥିଲା ଆମର ଗାଁ ନେ ସିକାର । ଏଭେ, ଜେଭେ ଜେତେବେଲେ ନୁରଲେ ମିଲୁଛେ ସିକାର ଇ କୁକୁରା ଗୁଡାନେ । ସୁକୁରୁ ପୁଓ ବି ଦେଇଚେ ତାର ପାଖେ ଆର ଗୁଟେ ଗୁଡା: ଭୁଜା ଆର ସିକାର । ପଁଦର ଟଁକା ଦେଲେ, ଟୁପଲେ ଭୁଜା ଆର ଗିନେ ଝୋଲର ସାଁଗେ ଚାଏର ଫୁଟ ସିକାର । ବଡା ସୁବିଧା, ଏଭେ ଖାଲି ସିକାର ତୁନ ବି ମିଲସି ବେଲେ ଉବେଲେ ।

ଆର ଆର ଚାଏର ପାଁଚଟା ଦୁକାନ ବି ହେଲାନ, ଗାଁ ମୁଡସେ । ପାନ ମିଲୁଛେ, ପାନ ଦୁକାନେ ପାଉଚ ମିଲୁଛେ, ପାଖର ଦୁକାନେ ମୁବାଇଲ ଚାରଜ କରିହେସି, କାଣା ପରେ କଟା ହେସି ଜେ ଲାଗିଗଲେ ପଏସା ମିଲସି ଗୁରଦୁ । ଅଧ ରାଏତ ତକ ଲାଗିଥିସି ଗହଲ ଚହଲ ଆମର ଗାଁନେ । ଆମର ଗାଁ ବି ସହର ହେଲାନ ।

ଏସୁର ହରିବୁଲ ମରିଗଲା କାରତିକ ମାସର ଉଜଲ ପଖର ଏକାଦସି ଦିନ । ସବୁ ଆଡେ ହୁଲାହୁଲି ହରିବୋଲ ପଡୁଥାଏ ପଁଚକ ବଲି । ଗାଁ ସାରାର ବୁଢାବୁଢି ଧଏନ ଧଏନ କଲେ ହରିବୁଲ କେ । କହେଲେ : "ତରିଗଲା ବୁପରା ତରିଗଲା ।"

ହେ ଦିନ ଏକା ହଜାରୁ କହିଥିଲା : "ଗୁଟେ କଥା ତମେ ନିଘା କରିଛ କିନି ଜେ, ହରିବୁଲ ଗାଧି ଜଉଥିଲା ପୁରନି ବଁଧକେ, ଆଠ କାଲି ବାରମାସି । ସାଁଗେ ନଉଥିଲା ଗୁଟେ ଚାଁଘରି । ବଁଧର ଅଁଟେ ପାଏନୁ କାଢୁଥିଲା ଚାଁଘରେ ମାଏଟ । ଆଏରକେ ଆନୁଥିଲା, ବନଉଥିଲା ସିବଲିଁଗ । ଧୁପ ଦିପ, ଭୋଗ ରାଗ କିଛିନାଇ, ଗାଧି ପାଦି କରି ଖାଲି ମୁଡିଆଟେ ମାରୁ ଥିଲା, ଚାଁଘରିର ସିବଲିଁଗକେ । ହାତ ଜୁରି କରି ଠିଆ ହଉଥିଲା ଘଡେ,ଫେର ମୁଡିଆଟେ ମାରୁଥିଲା, ଚାଁଘରିର ମାଏଟ କେ ଆନୁଥିଲା ଖଁଦେ ବୁହିବୁହି । ଚଲତି ବାଟେ ଜେନେ ବି ଦେଖୁଥିଲା ଖାଲ ଢିପ, ସେଟାକେ ରୁକି ଦଉଥିଲା ସେନେ ନ ।

ଦିନେ ତ ମୁଇଁ ପଚରାଲିଁ, ହଏ ବୋ ଧରମ କରୁଛୁ ଜେ ସିବ ଲିଁଗ ଥାପୁଛୁ, ମୁଡିଆ ମାରୁଛୁ, ଆର ସେ ଭଗବାନ କେ ଆନି କର ପକଉଛୁ, ଆମର ଚାଲଲା ବାଟେ ? ଆମେ ଭକୁଆ ବଲ ତ, ପାପ ମୁଢାମୁଁ ଆମେ, ପୁଇନ ଜାକର ତୋର ?

ହରିବୁଲ ପରେ ହସି ହସି କହିଥିଲା ଖେନେଇ ଖେନେଇ : ମତେ ସପନା ହେଇଛେରେ ବାବୁ, ପୁରନିବଁଧର ମାଏଟ ଆନି କରି ବାଟେ ଘାଟେ ପକାବାକେ । ମାହାପୁରୁ, ସବୁ ଠାନେ ଅଛନ, ବାଟେ ଘାଟେ ସବୁଠାନେ, ଜେନେ ବି ପାହା ପକଉଚୁ, ମାହାପୁରୁ ମୁଡେ ଏକା । ଗାଁନୁ ମାଛି କାଛି ଜିବାର ଲାଗି ଇଟା ଏକା ବାଟ । ଜିଏ ଜାହା ପାରମା, ନିଜେ ଏକା କରମା । ସରକାର ଘରର ଲାଗ ଖାଇ ଖାଇ ବଁଚଲେ, ଇ ଜଁଜାଲେ ଘାଁଟି ହଉଥିମା, ପୁରୁସା ପୁରୁସା, ଜିବନ ଜିବନ ।"

ହଜାରୁ ଫଁ କରି ନିସାସଟେ ପକେଇଥିଲା ହେ ଦିନ । ଫେର କହିଥିଲା: "ବିଚରା ମରିଗଲା ନାଇ ଜେ ତରିଗଲା ଇ ସଁସାରର ଜଁଜାଲୁ ।"

ଆଏଜ ଇ ଭୋଟ ବେଲକେ ହାତ ଜୁଡି କରି ଘର ଘର ବୁଲି ବୁଲି ଗୁଟେ ନ କଥା କହୁଛେ ହରିବୁଲର ପୁଓ ଜଗନନାଥ ବାରିକ: "ଆମେ ହେଲୁ ସେବାକାରି ଜାଏତ, ପୁରସା ପୁରସାନୁ ସେବା କରି ଆସିଛୁଁ ଇ ଗାଁ ମାଁ କେ । ମୋର ବୁଆର ତ ଗୁଟେ ନ ସପନ ଥିଲା, ଗାଁ ନୁ ମାଛି ଭାଗି ଜଉନ । ସଫା ସୁତରା ହଉ ସମକର ମନ । ପୁରନି ବଁଧେ ଝଲ ଝଲ କରୁ ପାଏନ । କୁଡେ ବରସ ମୋର ବୁଆ, ତାର ପାରୁ ପତେ, ପୁରନି ବଁଧର ମାଏଟ କାଢି କରି ପକେଇଛେ ଇ ଗାଁର ଖାଲ ଢିପ ରାସତାନେ । ମତେ ଥରେ ସୁଜୋଗଟେ ଦଉନ ଭାଇମନେ, ଭୋଟଟେ ଦଉନ, ସରପଁଚଟେ କରୁନ, ଦେଖବେ ଇ ଗାଁନେ ସୁନାର କୁକରା ଉଡବା । ମାଡ, ଗାଲି, ହିଁସା, ଅହଁକାର ସବୁ ପଲାବା । ଘରେ ଘରେ ଧନ ସଁପତି ଭରିଜିବା । ମୋର ବୁଆର ଅଧା ସପନ ଆର ତମର ଆସରିବାଦ......."

ସଭେ କହୁଛନ, ଜଗନ ଜିତି ଜିବା । ବଲେଁଗେରୁ ଆସିଛନ ଦସଝନ ଗୁଁଡା ଗୁଟେ ବଲେଲୋନେ । ପାଟି ବି ଦେଇଛେ ଲଖେ ଟଁକା, ଭାଟିକେ କହି ଦେଇଛେ ଏମେଲେ । ଗାଁ ମୁଡସା ନେ ତ ଅଁଟପହରି କରୁଛନ ଗାଁର ସବୁ ପିଲା ଆର ମାଇକ ପାଁଚ ଦିନ ହେଲାନ :

**ଜଗନନାଥ ବାରିକ .. .. ..**

**ଜିଁଦାବାଦ .. ଜିଁଦାବାଦ**

**ଆମର ଚିନହା.. .. ..**

**ତେଲ ଗିନା.. ତେଲ ଗିନା..**

********

ସତକେ ସତ ଜଗନନାଥ ଜିତି ଗଲା ।

ତିନ ଦିନ ଚାଲଲା ଖାନା ପିନା, ଭୁଜି ଭାତ । ମାସେ ଦୁଇ ମାସ ଜାଇଛେ କି ନାଇ, ଜନା ପଡଲା ପୁରନି ବଁଧର କଁପ ଉଦଧାର ଲାଗି ସରକାର ଦେଇଛନ ଦସ ଲାଖ ଟଁକା । ସଭେ ଧଏନ ଧଏନ କଲେ ଜଗନନାଥ କେ । ସରପଁଚ ହେବ ତ ଏନତା । କୁଡେ ବରସେ

ଜାଇଛନ ପାଁଚ ଛ’ ଝନ ସରପଁଚ । କିହେ ନାଇ ପାରଲେ, ଦେଖ ଆମର ଜଗନନାଥ କେ, ଦୁଇ ମାସେ ଆନଲା ଏତକିଟେ ଟଁକା ।

ଜଗନନାଥ ଧାଉଁଥାଏ ଭୁବନେସର ପାଟିର କାମନେ.. .. ..

ଜଗନନାଥ ଧାଉଁଥାଏ ବଲାଁଗେର ଭାଟିର କାମନେ.. ..

ଜଗନନାଥ ଧାଉଁଥାଏ ବଲକ ଅଫିସ ମାଟିର କାମନେ.. ..

ରାତି ବିକାଲି ଫିରୁଥାଏ, କେଭେ କେଭେ ବଲେରୋ ଧରି କରି ସାଁଗେ ସାତ ଆଠ ଝନ ପିଲା । ଗାଁ ମୁଡସା ନେ ହଉଥାଏ ଭୁଜି ଭାତ ରାଏତ ସରତା । କେଭେ କେଭେ ଧୁ ଧୁ ଖରାବେଲେ ଝିକାରି ମନକର ସବଦ ମଝିଥି ସୁଭୁଥାଏ, ଜଗନନାଥର ନୁଆଁ ବୁଲେଟର ଘିଟ ଘିଟ ଘିଟ ଘିଟ । ସେଦିନେ ବେଲବୁଡାକେ ଗାଁ ମୁଡସେ ହଉଥିଲା ଭୁଜି ଭାତ, କହଁରି ଜଉଥିଲା ଗାଁ ସାରା ।

ସରପଁଚ ଜଗନନାଥକେ ଭେଟବ କେତେବେଲେ ? ଭେଟଲେ ତ ପଚରାବ କେଭେ ହେବା କଁପ ଉଦଧାର ?

ବିହା ବରପନର ମାସ ସରିଗଲା, ମହୁଲ ବେଟା ମାସ ସରିଗଲା, ପତର ତୁଲା ମାସ ସରିଗଲା । ପୁରନିବଁଧର ପାଏନ ସରିସରି ଆଏଲା । କେଭେ ହେବା କଁପ ଉଦଧାର, ସଭେ ଟାକିଛନ, ଆଏଜ ହେବା,କାଏଲ ହେବା ? ପଚରାଲେ ଜଗନନାଥ ସରପଁଚ ପରେ କହୁଛନ : “ଇ ଟା କାଣା ଆଘର ବାଗିର ହେଇଛେ, ରଫେ ରଫେ କରି ଲୋକ କୁଡୁଥିବେ କୁଡୁଥିବେ । ଚୁଡେ ଚୁଡେ କରି ଭାର ଫାଁଦି କରି ଲୋକ ବୁହୁଥିବେ । ତମେ ଦେଖବ, ମିସିନ ଆଏବା, ଏକା ଦିନେ କେ ଆଏବା ଦସ କି ପଁଦରଟା ମିସିନ । ଚାଏରଟା ପଁପ ସୁଖେଇ ଦେବା ପୁରନିବଁଧର  ପାନି । ସେ ଦିନ ଏକା ତମେ ଦେଖବ ମିସିନ କୁଡି ଦେବା, ବଉଁସେ ବଉଁସେ ଖାଲ । ସେ ଦିନ ଏକା ତମେ ଦେଖବ ପୁରନ ବଁଧେ ଅତାଲ ତାଲ ଝଲଝଲ ପାଏନ । ଖାଲି ଏମେଲେ ଆଁଗ୍ୟାର ଏଛେନ ଟିକେ ସମିଆ  ନାଇନ, ଦିହି ଭଲ ନାଇନ ବଲି ଜାଇଛନ ବିଦେସକେ । ଆସୁନ, କୁଡେ ବରସ ତ ଗଲା, ଦିନ କେତେଟା ର କଥା ତ ।”

ଗାଁ ସାରା ଖୁଲ ଖୁଲ ମୁଲ ମୁଲ, ବାହାଡାର ବାସି ଦିନେ ପୁରନିବଁଧେ ଦିଆ ହେବା ସୁଭ । ଗାଁ ର ସଭେ ବସି କରି ଠିକ କଲେ, ଇ ବଁଧର ନାଁ ଦେବେ, ହରିବୁଲ ବଁଧ । ପିଲାମନେ ଲାଗି ପଡଲେ, ମନତିରି, ଏମେଲେ ଆଏଲା ବେଲକେ କାଣା କାଣା କରମା ? ଡିଜେ ହେବା, କିରତନ ବି ହେବା, ଘୁମରା ଆସବା ପାଖର ଗାଁନୁ । ଘରେ ଘରେ ଦିପ ଜଲବା, କଲସି ବସବା, ଗୋଡଧୁଆ ହେବା । ଗାଁ ସାରା ହେବା ପ୍ରସେସନ । ସରପଁଚ କହୁଛନ ପଏସାକେ ଚିନତା ନାଇଁ । ଗୁଟେ ଦିନେ ହେବା ପୁରନିବଁଧେ ଝଲ ଝଲ  ଅତାଲ ତାଲ ପାଏନ, କେତେ ଦିନ ସପନ ।

ହେ ଦିନ ଆମେ ସଭେ ପ୍ରସେସନ ପହଁଚିଲୁ ବଁଧ ଆଏରକେ । କାହାକେ ନାଇଁ ସୁଝୁଥାଇ କାର କଥା । କିହେ ନାଇ ସୁନୁଥାଇ କାର କଥା । ଖାଲି ସୁଝୁଥାଏ ଜିଁଦାବାଦ.. ଜିଁଦାବାଦ.. । ଉସନାକେ ଫାଟି ପଡୁଥାଏ ଗାଁ । ବଁଧ ଆଡି ବନା ହେଇଥାଏ ଗୁଟେ ଷ୍ଟେଜ । ଷ୍ଟେଜ ସାରା ପାଟି ଚିନହାର ଜରି ପତକା । ପଛ ଆଡେ ରାଜ୍ୟର ନେତା, ମନତିରି,ଏମେଲେ ମନକର ଫଟୁ । ଗୁଟେ କୁନେ ଗ୍ରାମ ଦେବତି ସମଲେସରିର ଛୋଟଟେ ଫଟୁ, ପାଖେ ହରିବୁଲର ଫଟୁ । ନଡିଆ ଫଟା ହେଲା ସେଠାନେ, ଧୁପ ଦିଆ ହେଲା ସେଠାନେ, ଦିପ ଦିଆ ହେଲା ସେଠାନେ ।

ମନତିରି କହେଲେ ପାଟିର କଥା, ଏମେଲେ କହେଲେ ବିରୋଧି ଦଲର କଥା, ଜଗନନାଥ ସରପଁଚ କହେଲେ ଗାଁ ମାଁର କଥା : “ଆମର ଇ ଗାଁ କେତେ ପୁରସାନୁ ଜୁଗି ରହିଥିଲା, କିଏ ଆସବା ଆର ମତେ ବଦଲେଇ ଦେବା ବଲି । ଆଝିର ଆସିଛେ ଆମର ସରକାର.... (ଜଗନନାଥ ଅଟକି ଅଟକି କହୁଥାଏ, ଜହ ପିଇ ଦେଇଛେ କାଏଁ, ଏତକି ଲୁକର ଆଘେ କହେଲା ବେଲକେ ହାତଗୋଡ ବି ଥରୁଛେ) ଆମର ସରକାର ଆଝିର ଆସିଛେ ଆମର ଗାଁ କେ ପାଏନ ଧରି କରି.. ଝଲଝଲ ପାଏନ ପାଏନ ବାଗିର ସପନ ଧରି କରି......”

ହେତକି ବେଲେ ଏକା ହୁତ ହୁତ ହେଇ ଜଲିଗଲା ଜୁଏ । ଜେନ ଦିପ ଜଲୁଥିଲା ଲାଗିଗଲା ଆଘୋ ହରିବୁଲର ଫ୍ଲାସ ଫଟୁନେ । ହରିବୁଲର ଫଟୁନୁ ସମଲେଇ ଫଟୁ, ସମଲେଇର ଫଟୁନୁ ଝିକ ଝିକ କପଡାକେ, ଦେଖୁନ ଦେଖୁନ ପୁରା ଷ୍ଟେଜ, ପାଟିର ଜରି ପତକା ସବୁ, ମନତିରି, ଏମେଲେର ଫଟୁ ସବୁ .... । ହୋ ବମ ଥି ସରିଗଲା ସଭା, ଗାଡି ମଟରେ ଭାଗିଗଲେ ମନତିରି, ଏମେଲେ ଦେଖୁନ ଦେଖୁନ ।

ହେଦିନ ରାତିନୁ ପାଏନ ବରସିଲା ଜେ ତିନ ଦିନ ତିନ ରାଏତ ।

ପୁରନିବଁଧେ ପୁରିଗଲା ଟପଟପ ପାଏନ ।

ଆର ହେ ଦିନୁଁ, ଆମେ ନାଇଁ ଭେଟି ସରପଁଚ ଜଗନନାଥକେ । ସୁନିଛୁଁ, ଏଭେ ପରେ ବଲାଁଗିରେ ରହୁଛେ ନୂଆଁ ଗୁଟେ ଘର ବନେଇ କରି । କେଭେ କେଭେ ଅଫିସକେ ଆଏସି ତାର ବଲେରୋ ଧରି କରି ।

ଗାଁ ନେ ମାତିଛନ ଆରୁ ଆରୁ ପହିଲ ଅସଡିଆ ମାଛି, ସବୁବେଲେ ରନ ଭନ ରନଭନ । ପୁରନି ବଁଧର କଥା ପଡଲେ ଲୁକେ କୁହାକୁହି ହେସନ ଠରାନରା ଥି :

‘ଅସତ କେ ସହି ନାଇ ପାରଲା ସମଲେ ମା, ତାର ରାଗ ଜୁଏ ହେଇ ଜଲିଗଲା ....’

‘ଇ ସବୁ ବିରୋଧି ବାଲେ କର ନଟକୁଟ ....’

‘ଇ ମନେ ଏକା ଏନତା କରିଛନ ବୋ, ପଏସା ଖାଏବାର ଗୁଟେ ଉପେ

‘ଜଗନର ବଲାଁଗେର ଘର କେନର ପଏସା କି’

‘ହରିବୁଲର ନାଁ ନେ ରାଜନିତି ମସାନ ସହି ନାଇ ପାରଲା ଜାଲି ଦେଲା’



# ସମିଆ ଏକା ରଂଗ

ଗେସ ଲାଇଟ ଜଲେଇକରି ବସି ଥିଲେ ପାଁଚ ଛଅ ଲୋକ । ଅଁଧାରେ ପିଁଢା ମନକେ ବସିଥଲେ କିଏ କିଏ । କାର ମୁହୁଁ ନାଇ ଦିସୁଥାଇ ହେଲେ, ସୁଭୁଥିଲା ଟୁପୁର ଟୁପୁର କଥା । ଗାଁର ମଡୋ ସାଲେ ପଡିଥିଲା କେତେ ଖଁଡ ପାଲ ।

ମଝି ମଝି ନେ ଅଁଧାର ଆଡକେ ମୁହୁଁ କରି କରି ଦେବ କହୁଥିଲା : "ଆସ ନ ବୋ, ଅଁଧାରେ କାଣା ବସିଛ ?" ଅଁଧାରେ ବସିଥିବା ଲୋକ ମନେ ନାଇ ଆସୁଥାଇ କି କିଛି ବି ନାଇ କହୁଥାଇ । ତାଁକର ତାଁକର କଥା ହଉଥିଲେ କାଣା କାଣା, ଘାଏ ଘାଏ ହଁସୁ ଥିଲେ ଖଦ ଖଦେଇ ଖଦ ଖଦେଇ । ଦେବ ଇ ଆଡେ ସେ ଆଡେ ଦେଖୁ ଥିଲା, ଦୁଆରୁ କେ କହୁଥିଲା: "ଆର ଥରେ ଘର ଘର ଯାଇ ଡାକି ଦେଖମା କାଏଁ ?" ଦୁଆରୁ କହୁଥିଲା : "ଦେଖୁ ତ ଟିକେ ?"

ଦୁଇ ଦିନ ହେଲା, ସମକୁ ଭେଟି କରି ଦୁଆରୁ ଆର ଦେବ କହୁଥିଲେ: "ରଏବାର ରାତି ଖାଇ ସାରଲେ ଟିକେ ବସମା ମଡୋ ସାଲେ । ଗୁଟେ ଇସକୁଲ ଆମର ଗାଁନେ ବନାବାର ଲାଗି କଥା ହେମା । ଆମେ ସାଲେପାଲିର ଗୌତମ ମାରସଟରକେ ବି ଡାକିଛୁ , ସେ ଟିକେ ଆମକୁ ବାଟ ବତାବେ । ଦେଖ ଆଏବ ଟିକେ । ଗୌତମ ଆଁଗ୍ୟା ଆସିଗଲେ ନ ସଁଜ ପହରୁ । କାଇଛେ ଆମର ଲୋକବାକର ଦେଖାନାଇଁ ? ଦେବ ଫେର ଘାଏ କହେସି ; ଆସ ନ ବୋ, ଅଁଧାରେ ବସିଥିବ କେତେବେଲ ?

ଖରା ଦିନିଆ ଗାଁ ଖୁଲିର ହୁରହୁରିଆ ଧୁକା । ଖଟ ପକେଇ କରି ତ ଲୋକ ଇ ମୁଡୁ ସେ ମୁଡ ତକ ସୁଇସନ ବି । ମଡୋ ସାଲେ ଜଲୁଛେ ଗେସ ଲାଇଟ ବଏଲେ ଲୋକ

ଆଏବାର କଥା । କାଇଛେ, ଆସିଛନ ତ ଇ ପାଁଚ ଝନ । ଇ ଭୁତ ଭୁତ ଅଁଧାରେ କିଏ କିଏ ବସିଛନ ଜେ ?

ଦେବ ଇ ଆଡେ ହେବାର ଦେଖି କରି ଗୌତମ ମାସଟର ପଚରାସନ– ଇ ଥି କେତେ ଟଁକା ମସଲା ପକେଇଛ ବୋ ପିଲେ ? ମାସଟର ଡରୁଥିସନ ଗେସ ଲାଇଟ ଲିଭି ଜିବା ବଲି । ଦୁଆରୁ କହେସି – ଦୁଇ ଟଁକାର ଆଗ୍ୟା, ଅଧରାଏତ ତକ ତ ଜଲବା ଏକା । ସଭେ ଫେର ତୁମ ପଡସନ । ଟିକେ ବଲି ଉକିଆକେ ଚାରିଆଡୁ ମାଡି ଆସୁଥିସି ଅଁଧାର ।

ମଝି ନେ ଜଲୁଥିସି ଗେସ ଲାଇଟ ସଁ ସଁ ସଁ ସଁ । ଧୁରେ କଠଉ ପିଁଧି କରି କିଏ ଆସବାର ସୁଭୁଥିସି । ମାସଟେରେ ଫେର କହେସନ ଭାଁଗବା କେ ଇ ତୁମ ତାମ ଭାବ– "ତମର ଗାଁକେ ଇ ଗେସ ବଢେ ସୁବିଧା ହେଲା ବୋ, କିଏ ଦେଲା ବଲୁଥିଲ କି ?"

ଦେବର ହେପାଜତେ ରହେସି ଇ ଗେସ ଲାଇଟ, ବଡା ଗହଗହନେ ସେ କହେଲା– "ଇ ଭୋଟ ବେଲେ ଆଗ୍ୟା ମୁଇଁ ଏକା କହେଲି, ଆମର ଗାଁକେ ଜେ ଚିନହା ଟେ ଦେବ, ଆମେ ତାହାକେ ଏକା ଭୋଟ ଦେମୁଁ । ସଭେ ତ ଦେମୁଁ ଦେମୁଁ ବଲୁଥିଲେ , ହେଲେ କଁଗରେସ ପାଟି ବାଲେ ଆନିଦେଲେ ଇ ଗେସ ଲାଇଟ । ବଡା ସୁବିଧା.."

ଦେବ ଆର କାଣା କହିଥିତା କି କାଣା ଜେ, ଗଁତିଆ ଆସଲେ ବଲି ତୁମ ପଡି ଦେଲା । କଠଉ ଖୁଲି କରି ଗଁତିଆ ବସଲେ ପାଲ ଉପରେ, ଗୌତମ ମାସଟରେ ଜୁହାର କଲେ ଗଁତିଆକେ । ତଲ ଆଡୁ କାର କାର କୁହା କୁଟା ସୁଭୁଥିଲା । ଗୁଟେ ଗୁଟେ କରି ଜମା ହେଇ ଗଲେ କୁଡେ ପଚିସ ଲୋକ ଦେଖୁନ ଦେଖୁନ ।

ଗୌତମ ମାସଟେରେ ଆରମ କଲେ : "ଦେଖ, ଇସକୁଲ ଗୁଟେ କଲେ ଆଘୋ ଜାଗା ଟେ ବାଛମା ଆର ନାଁ ଟେ ବାଛମା । ଇଟା ତ ହେବା ମଧ୍ୟ ଇଂରାଜି ବିଦ୍ୟାଳୟ । ଇସକୁଲର ନାଁ ଟେ ଏଛେନ ଠିକ କରୁଁ ।"

ଗଁତିଆ ବୁଢା ଆଡକେ ସଭେ ଦେଖୁଥାନ । ତୁମ ପଡିଥାଏ ଲୋକ ଟା । କାହାରି ଆଡକେ ନିଘା ନାଇଁ । ସୁନାସିର କହେଲା ହୁଁ ଧାପେ : "ଇଟା କେ କାଣା ଭାବୁଛ ବୋ, ଇସକୁଲ ତ ହେବା ଗଁତିଆ ବୁଢାର ନାଁନେ । ସେ ତ ଏକା ଆମର ଗାଁ ମା ବୁଆ, ତାର ପାଁଚ ଏକଡ ଜମି ଦେବା, ପଏସା ପତର ଆମେ ଉଘାମା । ଗୌତମ ମାସଟେରେ ଆର ଦେବ ବୁଝବେ କାଗଜ ପତରର କଥା ।" ଇଟା କହେବାକେ ଜେନତା ସୁନାସିର ଜୁଗିଥିଲା କେତେବେଲୁ । ପହେଲା ଆସିଥିଲା ସୁନାସିର ପାଲ ଉପରେ ବି ବସିଥିଲା ଆର ଗେସ ଲାଇଟ କେ ବି ଛିଇଁ ଦଉଥିଲା ଘାଏ ଘାଏ ।

ଫେର ସବେ ତୁମତାମ । କୁକୁର ଦୁଇଟା ଭୁକଲେ ଦୁରିନେ । ବାହାରକେ ଜିବାର ଲାଗି ହାତେ ଲାଲଟିନ ଧରି କରି କିଏ ଝନେ ଜଉଥିଲା ଗାଁ ମୁଡସା ଆଡକେ । ଭୁଟ କରି ଠିଆ

ଉଠଲା ଜୁନହାଁ ଗଁଡିଆ ଘରର ମଝିଆଁ ପିଲା ଚକର, ଟିକେ ଖାଁସଲା ଆର କହେଲା: "କୁଁଦା ଦେଓ ଆମର ଗାଁ ମୁଲ । ତାର ଆସରା ଥି ଆମେ ସଭେ, ତାର ନାଁ ନେ ଆରମ କଲେ ବନେ ହେତା ।"

ଗଁଡିଆ ବୁଢା ଖାଲି ହସି ଦେଲା ମୁଲ କରି, କହେଲା: "ଆରେ ଚକର କୁଁଦା ଦେଓ ପରା କଥା କହନ୍ତି ନି, ତାଙ୍କ ନାଁ ରେ ସ୍କୁଲ କଲେ ପାଠ ଆଉ କଣ ହେବ ?" ତାଁକର ଦେବତାର ନାଁନେ ଇ କଥା ସୁନି କରି ଚକର ରାଗିଗଲା । କାଣା କହେମି ବଲି ଭାବୁନ ଭାବୁନ, ତଲେ ବସିଥିବାର ଆର କେତେ ଝନ କହେଲେ : "ହେନତା ହେଲେ ଲିଁଗା ଦେଓ ନାଁ ନେ ହଉ । ବଁଚିଥିବାର ମୁନୁସର ନାଁ ନେ ଇସକୁଲ ହେବା କେନତା କରି । ହେ ଦେ ଆମର ଜମିଦାର ବୁଢା ତାଁକର ବୁଆ ମାର ନାଁ ନେ ଇସକୁଲ ନାଇ କରିଛନ ? ତାଁକର ନାଁ ନେ କାଁ କରି ନାଇ କରି ? ଇ ଟା ଆର ଗୁଟେ କଟକିଆ ପେଁଚ । କିଏ କିଏ ଇ କଥା କହୁଥିଲେ ଜନା ନାଇ ପଡୁଥାଇ, ସେମନେ ବସିଥିଲେ ଧୁରେ ଧୁରେ ଆର ଅଁଧାରେ ଅଁଧାରେ ।

ଗୌତମ ମାସଟେରେ ଦେଖଲେ ବିଗିଡି ଜଉଛେ କଥା, କହେଲେ: "ପିଲେ, ଦେଖ ଆଘୋ ଗୁଟେ କମିଟି କରୁଁ, ପାଁଚ ଛ ଝନକେ ନେଇ କରି । ତାହେରୁ ଠାନ ବାଛୁଁ କେନେ ହେବା ଇସକୁଲ । ପାଁଚ ଏକଡ ଜମି ସେଟା ଫେର ଗାଁ ପାଖେ ନାଇ ହେଲେ ନାଇଁ ଚଲେ । ପିଲା ଟୁକେଲ କାଣା ଦୁରିଆକେ, ଝାର ଜଁଗଲକେ ଜାଇପାରବେ ପଢବାର ଲାଗି ? ଫେର ତ ଖାଇ ଛୁଟିକେ ଆସବେ ଖାଏବାକେ ? ଦୁଇ ଦୁଇ ଥର ଜିବାର ଆସବାର ଟା କାଣା କମ କଥା । ନାଁ ଥି କାଣା ଅଛେ, ଇଟା ଗୁଟେ କିରତି ଆଏ ବୋ, ଏଛେନ ଆର ଆଘର କଥାକେ ନାଇ ସୋର କରୁଁ । ଇସକୁଲ ଗୁଟେ ହେଲେ ...."

ହୋ ହା ଥି ନାଇ ସୁଭୁ ଥାଇ ଅଧାକଥା । ଉଠି ଜାଇଥିଲେ ନ ଅଧା ଲୋକ । ଗୌତମ ମାସଟେରେ ଆରୁ ଆରୁ କହୁଥାନ କାଣା କାଣା । ଫୁଟ କରି ଲିଭିଗଲା ଗେସ ଲାଇଟ ।

*******

ଖରା ଦିନିଆ ଗୁଲଗୁଲିଆ ଦୁଇପହର, ଘରେ ରଖି ନାଇ ଦିଏ କି ବାହାରେ । ଗାଁର ସବୁ ମୁନୁସ ପିଲାକର ଇନେ ଏକା ଆସରା । ତଲ ପରା ଗାଁ ମୁଡସାର ଇ ଢଡୋ ବରଗଛ । ପୁରା ଗାଁ ଟାକର ଲୋକକୁ ଛଏଁରା ଦେଇଦେବା । କେନ କୁନେ ପିଲା ମନେ ଖେଲୁଛନ ତାସ, କେନ କୁନେ ବୁଢାମନେ ସୁନୁଛନ ମହାଭାରତ । ମାଟିର ଲାଗି ମହାଭାରତ, ରଜା ହେବାର ଲାଗି ମହାଭାରତ, କିଏ ବଡ ହେବା ହେତିର ଲାଗି ମହାଭାରତ । ପୁଝାରି ବୁଢା ତ କହେସି– ମହାଭାରତ ନାଇ ସୁନରେ ପିଲେ, ହେଟା ସୁନଲେ ଗାଁନେ ଲାଗସି ଗାଲି ଗୋଲମାଲ, ମାଡମରଦନ । ହେଲେ ବୁଢାର କଥାକେ ସୁନୁଛେ କିଏ ? ମହାଭାରତେ ଏକା

ଜନା ନାଇ ପଡେ କିଏ ଠିକ କିଏ ଭୁଲ, କିଏ ବଡ କିଏ ସାନ ।

ଠିକିଡି ବଡ କି କଲାପାନ, ଚିଡିଆ ବଡ କି ଲାଲପାନ, ଫେର ପଚରାସି ସରୋଜ ।

ରୁଗଧର ବିତବିତା ହେଇ ଜାଏସି ଇ ଗୁଟେ କଥା ସୁନି ସୁନି । କହେସି: "ହେତ, ଏତକି ନାଇ ଜାନିତ କାଁ କରି ଖେଲୁଛୁ ତାସ । ଇନେ କିହେ ବଡ ନାଇଁସେ କି ସାନ ନାଇଁସେ, ରଂଗ ଏକା ବଡ । ରଂଗ ଚିଡିଆ ହେଲେ ଲାଲପାନ ରଜା କେ ବି କାଟି ଦେବା ଚିଡିଆ ଦୁଇ । ରଂଗ ଠିକିଡି ହେଲେ କଲାପାନ ମନତିରି କେ ବି କାଟି ଦେବା ଠିକିଡି ଦୁଇ ।' ମହୁଲ ବିକା ପଏସାନୁ ତାସଟେ ସିନା ଘିନିଛେ ଦସ ବରସିଆ ସରୋଜ ହେଲେ ତାସ କାଣା କିଛି ନାଇ ଜାନି ।

ତାର ତାସ ତାହାକେ ନାଇ ଖେଲାଲେ ବି ନାଇ ଚଲେ । ସରୋଜ ଫେର ଘାଏ ପଚରାସି: "ରଂଗ କାଣା ବୋ ମାମୁଁ ?" ରୁଗଧର ରିସମି ହେଇ ଜାଏସି ମନେ ମନେ କହେସି: "ରଂଗ ତୋର ବୁଆର --- ।" ଫେର ମନ କେ ବୁଝେଇ କରି କହେସି: "ରଂଗ ପରେ ସମିଆ । ରଂଗ କେତେବେଲେ କାଣା ହେବା କିହେ ନାଇ ଜାନି । ଜେ ରଂଗ କରବା, ଜାର ହାତେ ରଂଗ ଥିବା ସେ ଏକା ବଡ...."

ରୁଗଧର ଇ ଦସ ବରସିଆ ସରୋଜକେ ଆର କାଣା ବୁଝେଇଥିତା ଜେ ହେତକି ବେଲେ ଚକର ଆଏସି ଆର ପଚରାସି: "ଆର କାଣା କାଣା ହେଲା ବୋ ରୁଗଧର, ଇସକୁର କଥା । ହେଦିନ ରାତି ତ ମୁଇଁ ଉଠିକରି ପଲାଲିଁ, ଇ ମନକର ଦୁଇ ପେଁଚିଆ କଥା ସୁନିକରି । ଉଡି ଆସିକରି ଡାଲେ ବସିଛେ, କାଲହିର ଇ ପଟୁଆରି, ଆମର ଇ ସହେ ପୁରସାର ଗାଁନେ । ଗଁତିଆ ହେଇଛେ ଜେ, ବଲୁଛେ ତମର ଦେବତା କୁଁଦା । ମରବ ଗା ସଲେ ମରବ, ପଚେଇ ଖାଏବା ତମକୁ ଗଁଡ ମନକର ଦେବତା ।"

ରୁଗଧର ବଡା ଅଡୁଆନେ ପଡି ଜାଏସି ଇଟା ସୁନିକରି । କହେସି : "ବସ ନ ବୋ, କହେମି ଜେ । ସରୋଜ ଭଁନଜା, ଚକରକେ ଦିଅ ତ ତମର ତାସ, ତମେ ଆଏଜ ଟିକେ ଦେଖ, କାଲକେ ଆମେ ଖେଲମା ।"

"ନାଇ ବୋ, ମୁଇଁ ନାଇ ଖେଲେ । ଟୋଲ ଝାର କେ ଗଲେ ଜେ ଝାଏନୁ । ଘାଟି ଆଡୁ ପରେ ଉତୁରିଛନ ଦଲେ ମାକଡ, ନାଇ ଖେଦଲେ କଡେ ବି ଟୋଲ ଆର ନାଇ ମିଲେ ନ । ଘାଟି କେ ତ କୁପ କଲା ସରକାର । ପାଁଚ ବଛର ତଲେ ସବୁ ରେଁଗାଲ ଗଛ କାଟି ନେଲା ଟିଟଲଗଡନୁଁ ସମଲପୁର ତକ ରେଲ ଲାଇନ ନେ ପକାବେ ବଲି । ତାର ଦେଖା ସିଖା ଠିକାଦାର କଟେଇ ନେଲା ଆର ଆର ସବୁ ଗଛ । ଏଭେ ଏଡକି ବଡ ଘାଟି ପରଛା । ମାକଡ ମନେ ଆର କାଁ କରବେ, ତଲକେ ଉତୁରୁଛନ । ଜେ କହନ ଆର କାଣା କାଣା କଲ ହେ ରାତି ? "

ରୁକଧର ଖୁସୁର ମୁସୁର ହେଲା, କହେଲା : "ମତେ ବି ପରେ କମିଟିନେ ରଖିଛନ । ଆମର ପରାର ଦୁଇ ଝନ, ତାଁକର ପରାର ଦୁଇ ଝନ ଆର ନୁଆଁପାଲିର ଝନେ ।"

"ହେଟା ତ ମୁଁଇ ସୁନିଛେ, ଜେ ଇସକୁଲର ନାଁ କାଣା ହେଲା ?" ହରବର ହେଇ କରି ପଚରାସି ଚକର ।

ରୁଗଧର ଇଥି ତାହିଁ ହେଇ ଜାଏସି । ଜେନତା କାଣା ଗୁଟେ ଲୁକଉଛେ, ଲୁକେଇ ନାଇ ପାରୁଛେ । କହେସି – ଜାଗା ଠିକ ହେଲା ବଲ ତ । ଗାଁ ମୁଡସାର ଜେନ ଭୁବରା ଆଁଟ ହେନେ ଇସକୁଲ ହେବା । ପିଲା ଟୁକେଲକର ଲାଗି ଜିବାର ଆସବାକେ ସୁବିଧାହେବା । କାଲ କାଲ କେ ରହି ଜିବା ଇସକୁଲ ଘର ହେଇ କରି । ଗଁତିଆ ବୁଢା କମିଟି ନାଁ ନେ ରେସଟି କରି ଦେବା ଆଏବାର ସୁକୁରୁବାର ଦିନେ । ଦଉଛେ ଜେ ବଡ କଥା, ଇସକୁଲର ନାଁ ତାହେରୁ ଦେଖମା ନି କାଏଁ ।

ରୁଗଧରର କଥାନୁ ଚକର ଜେନତା ବୁଝି ଜାଏସି ସବୁକଥା, କହେସି : "ଫାଁଦେ ପଡଲ ତାହେଁରୁ । ତମେ ନାଇଁ ଜାନି ହେ ଭୁବରା ଆଁଟ, ଭୁବରା ଆଁଟ ଏକା ନାଇ ସେ ।"

ଦେସ ସୁଆଧିନ ହେଲାକେ ଜେନତା ଗଁତି ଗଲା, ରଜା ଇ ଠିକାଦାର ଗଁତିଆ ମନକୁ ଡକାଲା, କହେଲା – "ଦେଖ, ଦେସ ତ ଆମର ହାତୁ ଗଲା, କାଲକେ ଆମର ଜମିନ ବାଡି, ଧନ ସଂପତି ବି ସରକାର ନେଇ ଜିବା । ମୁଲୁଁ ଗୁଟେ କାମ କର ପଟୁଆରି ମନକୁ ଡାକିକରି ଠିକ କର କେନ କେନ ଟା କରବ ଭୁବରା ଜମିନ । ଆମର ପୁଓ ପରଜା ଭାବଟା ଥଉ । ଲୋକକୁ କହ ରଜା ମନତିରି ହେବେ । ଆମେ ସବୁ ଭୋଟ ଦେମା, ଆମର ଇ ତରା ଚିନହା କଥା ବି କହେବ । ଇ ଚିନହା ନେ ଏକା ଭୋଟ ଦେବେ । ତମେ ମନେ ବି ତ ମେମର ହେବ, ଇ ଚିନହାନେ...."

ରୁଗଧର ମଝିନେ କହେଲା –– ନାଇ ବୋ ଚକର, ଇସକୁଲ ଗୁଟେ ଅଲଗ କଥା, କାଲକେ ଆମର ପିଲା ଟୁକେଲ ପାଠ ପଢବେ କିନି ?

ସୁନ ସୁନ ତୁଇ କିଛି ନାଇ ଜାନି । ଆମେ ବି ଗଁତିଆ ଥିଲୁଁ ପୁରସା ପୁରସାନୁଁ ।

ଇ ଶ୍ୟାମବଁଧୁ ତ ଠକି ଭଁଡି କରି କାଲହିର ଗଁତିଆ । ମୋର ବୁଢା ଦଦା ର ନୁ ସୁନିଛେ, ଇ ଆଇଛେ ବୋଲଗଡନୁଁ । ଜେନ କଟକି ବନଦୋବସ ହେଲା ହେତକି ବେଲେ ପଟୁଆରି ହେଇ କରି ।

ଆମର ଗାଁନେ ଖୁଟ କଟା ପରଜା ଥିଲେ, ଦୁଇ କୋର ଚାଏର ଘର, ତିନ କୋର ହଲ ଆର ଦୁଇ କୋର ଅଠରଟା ଡିବି । ବଏଲେ, ସୁଖବାସି ଥିଲେ ଚଉଦ ଘର । ଛଅ କୋର ଥିଲା ଗାଁ ର ମାଲଗୁଜାରି । ହେ ଦିନ ମୋର ବୁଢା ଦଦା ଜାଇଥାଏ, ତିନଟା ଭାର ଭରୁଆନେ ଟଁକା ଧରିକରି ଜରାସିଂଘା ।

ଜମିଦାର ବୁଢା ପରେ କହେଲେ, ପିଲେ ଖ ପିଅ, ଆର  ଏକା ସାଁଗେ ସଭେ ଜ, ବଲାଗେଁରେ ଟଁକା ବୁଝେଇ ଦେଇ କରି ଆସବ । ଆମର ଦେବାନ ଆର ଦସଟା ସିପେଇ ବି ଜିବେ ତମର ସାଁଗେ । – ସବୁ ଗଁତିଆ ମନେ ପରେ ବଲାଗେଁର ଗଲେ ଟଁକା ଧରି କରି । ସେନେ ସୁନଲେ ଜେ ଗାଁ ମନକର ମାଲଗୁଜାରି ବଢିଛେ ନୁଆଁ ବନଦୋବସନେ । ଆମର ଗାଁର ମାଲଗୁଜାରି ହେଇଥିଲା ପଁଦର କୋର । ଇଛେନ ହେଡି ଟଁକା କେନୁ ଆନବେ ? କେତେ ହାରି ଗୁହାରି କଲେ ବାବୁ ଭାୟା ମନକେ । କାକୁତି ବିନତି କରି ଗୋଡ ପଡଲେ, ଟଁକେ ଦୁଇ ଟଁକା ବଁଦେନ ବି ଦେଲେ । ସେସେ ରଜାର ଦେବାନ ପରେ କହେଲେ, ସମକୁ ରଜା ଦେଇଛନ ସାତ ଦିନ ସମିଆ, ନାଇ ହେଲେ ବେଦଖଲ ହେବ ଗାଁନୁ, ନୁଆଁ ଗଁତିଆ ହେବେ  । "ଟଁକା ଜେତକି ଆନିଛ, ଦେଇ କରି ଜ" ।

ଫଁ କରି ନିସାସ ଛାଡସି ଚକର ଏତକି କହି କରି । ତାହେରୁ କାଣା ହେଲା ପଚରାସି ରୁଗଧର । ସଭେ ଆଁ କରି ଦେଖୁଥିସନ ଚକରର ମୁହୁଁକେ, ଫେର ଚକର କହେସି - "ସବୁ ଗଁତିଆ ଫିରି ଆଏଲେ ଜେ ଜାର ଗାଁକେ । ଆଏ ଉପେ କଲେ, ପୁଓ ପରଜାକେ ଠୁଲାଲେ, ମାହାଜନ ମନକୁ ଉଧାର ମାଗଲେ । ହେଲେ, ଏତକି ଟେ ପଏସା ଆସବା କେନୁ ? ଇନର ସବୁ ପଏସା ତ ଠୋଲ ହେଇଥିଲା ପଟୁଆରି ମାନକର ହାତେ । ବନଦୋବସ ବେଲେ କଟକ ଫାଲୁ ଆସିଥିଲେ ପଟୁଆରିମନେ, ପରଜା ମନେ, ଗଁତିଆ ମନେ ହେମନକୁ ଦେଇ ଥିଲେ ସବୁ ପଏସା ଜମିନ ବାଡିର ସୁବିଧା କରି ଦେବେ ବଲି ।"

ଚକର ତୁମ ପଡସି ଟିକେ । ଧିରେ ଧିରେ କହେସି – "ହେ ଥର ପରେ ପାଟନା ରାଏଜର ପାଁଚ କୋର ଗଁତିଆର ଗଁତି ଗଲା । ଇ ଶ୍ୟାମବଁଧୁ ହେଲା ଆମର ଗାଁର ନୁଆ ଗଁତିଆ ।

ଛାଡ, ଜାଏସି ମୁଇଁ ମାକଡ ଖାଇ ଦେଇଥିବେ ନ ମୋର ସବୁ ଟୋଲ ।"

*******

ପ୍ରଧାନ ଶିକ୍ଷକ, ଶ୍ୟାମବନ୍ଧୁ ମଧ୍ୟ ଇଂରାଜି ବିଦ୍ୟାଳୟ, ସଗଡା ।

ଉଦୟ ପ୍ରତାପ ଭାବସନ ଠିକ ଶୁଭୁଛେ । ମୁନୁସର ଦରକାର ଗୁଟେ ନାଁ, ଗୁଟେ ପହେଚାନ । ଜରାସିଂହାନୁ ସାତ କିଲୋ ମିଟର ବାଟ ଜାଇଆସି ହେବା । ଛୋଟ ଗାଁଟେ ତ , ସେନେ ରହି ନାଇ ହୁଏ । ଇ ପତରଫଡି ସେ ପତରଫଡି, ଇ ଗୁଛାକାଟୁ, ପତରବାଁଧୁ ମନକର ମୁନିବ ହେଇ କରି ରହେବାନୁ ଇଟା ଭଲ । ନାଁ ଟା ସିନା ଫରେସଟର । ଜାହା ହେଲେ ବି ରାଜପୁତ ପିଲା, ଗରିବ ଦୁଖିନୁ ପଏସା ଖାଇ କରି ଉପର ସାହେବ କେ ଦେବାନୁ ଭଲ, ଇ ମାସଟର ଚାକିରି  । ପଏସା ଜାହା ହେଲେ ଚଲବା, ପହେଚାନ ଟା ବଡକଥା ।

ଗାଁର ବଢେନ ବାଗିର ଇନେ ସେନେ ଟିକେ ଟିକେ ଜଁଗଲ, ମଝିନେ ଧରସା ବାଟ । ସାଇକଲ ମାଡି ମାଡି ଉଦୟପ୍ରତାପ ପୁହୁଚି ଜାଏସନ ସଗଡା । ନୁଆଁ ଇସକୁଲକେ

ବାଟ ବଟେଇ ଦେସନ କେତେଟା ପିଲା । ବଡ ବଡ ଦୁଇ ବଖରା ଘର ଧାଡି ହେଇ କରି, ଲାଗି କରି ପିଁଢା । ନୁଆଁ ମାଏଟ ଲିପା ହେଇଛେ, ଛାନିର ନୁଆଁ ନଡା ବି ବାରି ହଉଛେ । କାଁଥିର ନୁଆଁ ଲାଲ ମାଏଟ ନାଇ ସୁଖବାର ତାଏଲ । ସବୁଆଡେ ଉଦା ମାଟିର କହଁର ।

କେତେ ଖଁଡ କାଗଜ ଆର ଖାତା ନେଇ କରି ପହଁଚିସି ଦେବ ହେତିକି ବେଲକେ । ଇ ତ ସେଦିନ ଡାକି ଜାଇଥିଲା ଉଦୟପ୍ରତାପ ଘରକେ ଜରାସିଂଘା ।

'ଆଗ୍ୟା ଜୁହାର ବସୁନ' କହେସି ଦେବ, ଗୁଟେ ବଲି ପଡିଥବାର ଚଉକି ଆଡକେ ଦେଖେଇ କରି ।

ଉଦୟପ୍ରତାପ ବସସନ । 'ସବୁ ହେଇ ଜିବା ଆଗ୍ୟା ଆପଣ ଖାଲି ଆଏଲେ ହେଲା । ଇ ଟା କେ ଗୁଟେ ସେବା ବଲି ଭାବୁନ ତ, ଚାକରି ଛାଡି ଦେଇ କରି ଘରେ କାଏଁ କରି ବସି ଥିବେ ।' ଉଦୟପ୍ରତାପ ଦେଖୁ ଥିସନ ଆଘେ ଠିଆ ହେଇ ଥିବା ଲଁଗଲା ଲଁଗଲା ପିଲାକେ । ସୋର ପକଉଥିସନ ତାଁକର ଭବାନିପାଟନାର କଲେଜ ଦିନ ମନକୁ । ମାଟିର କହଁର ଆସୁଥିସି ତଲୁ, କାଁଥିନୁ ଚାରିହି ଆଡୁ ।

ଗଁତିଆ ବୁଢା ଆଏଲା ବେଲକେ ଆସିଥିଲେ ନ ଆର ଦୁଇଝନ ମେମର, ସାଲେପାଲିର ଗୌତମ ମାସଟେରେ ଆର ସରପଁଚ । ନୁଆଁ ମେଟେରିକ ପାସ କରିଥିବାର ପିଲା ବି ଆସିଥିଲେ ତୁସରାନୁ । ଉଦୟପ୍ରତାପ ସେମନ କୁ ନାଇ ଚିନହି । ଉଦୟପ୍ରତାପକେ ପହେଲା ପଚରାଲେ ଗଁଅତିଆ ବୁଢା : "ତମେ ତ ମୋର ପୁଅ ପରି ଆପଣ ଆଉ କଣ ପାଇଁ କହିବି, କହିଲ, ଏ ଚାକିରି କାହିଁକି କରିବି ଭାବୁଛ ?"

ଉଦୟପ୍ରତାପ କେ ବଡା ଅଡୁଆ ଲାଗସି ଇ କଥା । ସେ ତ ଛାଡିଛନ, କିରାନି ଚାକିରି, ଅଡିଟର ଚାକିରି, ଏଭେ ଏଭେ ଫରେସଟର ଚାକିରି । ବାବୁ ଭାୟା ଲୋକ ଚାକିର ଲାଗି ମୁଁଡ ବିକବାଟା ତାଁକର ଜାତକେ ନାଇ । ମାସଟର ଚାକିରି କଥା ଅଲଗା । ଇସକୁଲ ନେ ମାସଟର ଏକା ମାଜିସଟେଟ, ତାର ଉପରେ ଆର କିଏ ନାଇଁନ ।

ଉଦୟପ୍ରତାପ କହେଲେ : "ଆଗ୍ୟା ଶିକ୍ଷକ ଚାକିରି କଥା ଅଲଗା । ଏଠି ପିଲାଙ୍କୁ ମଣିଷ କରିବାକୁ ପଡେ ।" କଥାଟା ଗଁତିଆ ବୁଢା ମନକେ ପାଏଲା । ହଁସି କରି ଫେର ଘାଏ ପଚରାଲା: "ବାବୁ କହିଲ ଦେଖି କଟକି ବେ ।ବସ୍ଥରେ ଗୋଟିଏ ବାଡି କେତେ ହାତ ?"

ଉଦୟପ୍ରତାପକେ ମନେ ମନେ ହଁସା ଲାଗୁଥାଏ, ଆଏଜ କେ ଚାଲିସ ବରସ ତଲେ ହେଇଥିଲା କଟକି ବେ ।ବସ୍ଥ । ନୁଆଁ ହେଇ କରି ମହାରାଜ ହେଇଥିବାର ରାଜେ୍ର ନାରାୟଣ ସିଂହଦେଓ କଲେ ପାଟନାନେ ବେ ।ବସ୍ଥ, କେତେ ବରସ ଉତରୁ । ଅନାବାଦି ଜମି ସବୁ ହେଇଥିଲା ଚାସ ଜମି, ନୁଆଁ ନୁଆଁ ପରଜା ହେଇଥିଲେ, ନୁଆଁ ନୁଆଁ ଗାଁ ବସେଇ ଥିଲେ ଗଁତିଆ ମନେ । ମାଲଗୁଜାରି ବଢି ଥିଲା, ଗଁତିଆ ବି ବଦଲି ଥିଲେ ।

ଇ ସବୁ କଥା ସେ ସୁନିଛେ ତାଁକର ବାବାଦେଓର ଠାନୁ । ତାଁକର ବାବାଦେଓ ବୁଝୁଥିଲେ ଇ ଜରାସିଂଘା ଜମିଦାରିର ଅଧେ ଖାନାପୁରି । ଚାହିଥଲେ ଗଁତିଆ ହେଇଥିତେ ପାଁଚ ଖଁଡ ଗାଁର । ରଜା ଘରର ପିଲା ଗଁତିଆ ନାଇ ହନ, ଗରିବର ଟଁଟି ନାଇ ଚିପନ । କେତେବେଲେ କେତେ ହାତ ହଉଥିଲା ସେ ବାଡି, କେତେ ଲୋକକେ ଠଁକି ଥିଲା ସେ ବାଡି ଉଦିତ ପ୍ରତାପ ନାଇ ଜାନି ।

'ଜାଣିନି ଆଗ୍ୟା' କହେଲେ ଉଦିତପ୍ରତାପ ।

ଗଁତିଆ ବୁଢା ହସଲା ଖୁବ ଜୋରନେ । କହେଲା– "ଦେଖ, ଏଠିକାର ବି ଏ ପାସ ପିଲା ବି ଜାଣୁ ନାହାନ୍ତି, ବ ଟ ାବସ୍ଥର ବାଡି କେତେ ହାତ ? ପାଠ ପଢିଲେ କଣ ହେବ ?' କେମିତି ହେବ ଏ ଅଂଚଳର ଉନ୍ନତି ।"

ଉଦିତପ୍ରତାପର ମୁହୁଁ ଜଲି ଗଲା ବାଗିର ଲାଗଲା । ଘର ଭିତରେ ଆସାଢର ଗୁଲଗୁଲି, ବାହାରେ ଝିପ ଝିପ ବରସା । ଗୌତମ ମାସଟର କହେଲେ : "ଗଁତିଆ ଆଗ୍ୟା ମୁଳ କଥାକେ ଆସୁଁ, ଉଦିତବାବୁ ତ ଫାସ୍ଟ କ୍ଲାସନେ ବିଏ ପାସ କରିଛନ, ତାଁକୁ ପଚରେଇ କରି ଆମେ କାଣା ପରିକ୍ଷା କରମା । କାଗଜ ପତର ଠିକ ଅଛେ, ଆମକୁ ଅନୁମତି ମିଲିଜିବା ।"

ଗଁତିଆ ବୁଢା କହିଲେ : "ଆଉ ଗୋଟେ ହି କଥା ପଚାରିବି ବାବୁ, କିଛି ଭାବିବ ନାଇଁ, କହିଲ ଦେଖି, ମାଟି କେତେ ପ୍ରକାର ?"

ଉଦିତପ୍ରତାପର ଦିହି ସାରା ଝାଲ, ହଁଦ ମଁଦଉଛେ ପେଟ । ବାଁତି ବାଁତି ଲାଗୁଛେ, ଥରୁଛେ ହାତ ଗୋଡ ।

ବସିଥିବାର ଖଟଲି ନୁଁ ଠିଆ ହେଲେ ଉଦିତପ୍ରତାପ, କହେଲେ: "ମୋର ବାପାଙ୍କ ନା ଶୁଣି ଥିବେ ପଟୁଆରି ଆଗ୍ୟା, ବୀରେ୍ରପ୍ରତାପ ସିଂହ ନିନା । ଆପଣ ପଟୁଆରି ଥିଲା ବେଲେ, ଜମିଦାର ସାହେବ କହିବାରୁ ନୂଆଁ ହୋଇ ସେ ଆରମ୍ଭ କରିଥିଲେ ଚାକିରି, ବୁଝୁଥିଲେ ଜରାସିଂଘା ଜମିଦାରିର ଖାନାପୁରୀ । ତାଙ୍କଠୁ ଶୁଣିଛି ମାଟି ଦୁଇ ପ୍ରକାର – ଜନ୍ମ ମାଟି ଆଉ ପର ମାଟି । ମୁଁ ତ ପର ମାଟି କଥା କେବେ ସ୍ୱପ୍ନରେ ଭାବିନି, ଭାବିଛି ଜନ୍ମମାଟି କଥା, ଦେଖିଛି ସବୁବେଳେ ଆକାଶ । ପର ମାଟିର ଭୋକ ଆପଣମାନଙ୍କୁ କିପରି ଅମଣିଷ କରି ଥିଲା ସେତେବେଳେ, ସେ ସବୁ କଥା ମୁଁ ବାବାଦେଓଙ୍କ ଠାରୁ ଶୁଣିଛି, ଜାଣିଛି କେମିତି ଆପଣ ପାଇଛନ୍ତି ଏ ଗଉଁତି, ଏ ପ୍ରତିପତ୍ତି ।"

ବରସାନେ ଭିଜି ଭିଜି ସେଦିନ ଜରାସିଂଘାକେ ପଲେଇ ଆଏଲେ ଉଦିତପ୍ରତାପ । ପଛକେ ନାଇ ଦେଖି କାର ମୁହୁ କେ ନାଇ ଦେଖି ।

ଗଁତିଆ ବୁଢା ବି ମୁଡ ଗାଡିକରି ବସି ରହେଲା କେତେ ବେଲ । ସଭେ ତୁମ

ତାମ । ଗଉତମ ମାସଟର ଫଁ କରି ଛାଡଲେ ନିସାସ । ସଭେ ଫିରି ଗଲେ ଜେ ଜାର ଘରକେ । ନୁଆଁ ଲିପା ହେଇ ଥିବାର ଇସକୁଲ ଘରୁ ଆସୁ ଥିଲା ମାଟିର କହଁର । ନୁଆଁ ନୁଆଁ କଅଁଲୁଥିବାର ଘାସକେ ଚରୁଥିଲେ ଦୁଇ ପଟ କଲା ଭଇଁସ । ଜେତକି ଖାଉଥିଲେ ମାଡୁଥିଲେ ତାର ନୁ ଜହ ।

ଅସି ବରସ ହେଇ ଥିଲାନ ଗଁଡିଆକେ, ହେ ଦିନର ରାତି ଏକା ସରିଗଲା ସବୁ କଥା । ସେ ବରସ ଆର ଇସକୁଲ ନାଇଁ ହେଇ ପାରଲା ।

ତଲ ପରାନେ ଏଭେ ବି ଲୋକ କଥା ହେସନ, ଦେଖଲ, ଇସକୁଲ ହେଇ ପାରଲା ଇ ଗାଁନେ । କୁଁଦା ଦେଓ ଗରବ ନାଇଁ ସହେ କାର ବି । ମଲା ଲୁକର ନାଁ ନେ ଏକା ହେସି ଇସକୁଲ । ଇସକୁଲ କରବ ତ ଆଘୋ ମର !



# ଜଗଲାସର କଥା

ଜେ. ଏନ୍. ଇଉ. ଇ ଗଂଗା ଢାବା । କେତେ ଲୁକର କେତେ ସପନର ଜନମ ମାଏଟ । ଇନେ ବସଲେ ଜଗାକେ ଘାଏ ଘାଏ ବଡା ଏକଲା ଲାଗସି । ସୋର ପଡସି କାହିଁ କେତେ ଧୁରେ ଥିବାର ତାର ଗାଁ । ଏଛେନ ସୁଇ ପଡିଥିବା ଚୁପଚାପ । ସୁଇ ପଡିଥିବେ ଜଗାର ମା ବାପା, ତାର ଦାଦା ବୁଢା, ତାଁକର ଚାଲିସ ଝନ ହଲିଆ ଆର ତାଁକର କୁଟୁମ ବାଟୁମ । ରାତିର ବାର ବଜେ ଇନେ ଏଛେନ କେତେ ଗହଲ ଚହଲ । ଦଲଦଲ ପିଲା ଟୁକେଲ ବସିଛନ ଇନେ ସେନେ, କଥା ହଉଛନ କେତେ କେତେ କଥା । ଜଗା ଏଭେ ଆର ଇ ଦଲେ ନାଇ ବସବାର, ବସିଛେ ଗୁଟେ କୁନେ ଧୁରୁ ସୁନୁଛେ ହେ ମନକର କଥା ।

କିଏ ଝନେ କହୁଛେ – ଭାରତନେ ଇ ଇମାରଜେନସି ଦରକାର, ତାର ଉନନତିର ଲାଗି । ହୁ ହୁ ବଢୁଚେ ଲୋକ ସଁଖ୍ୟା, ବଢୁଚେ ଗରିବି, ବଢୁଚେ ବେକାରି.. ବରସେ ହେଲାନ, ସବୁ ତ ଠିକ ଚାଲିଛେ.. .

ପରାସରନ ଟିକେ ଭୁରକୁଟିଆ ତାର ଭଁଗା ହିଁଥି କହୁଚେ– "କେରଲ ମେ ନା, ଏକ ଦାକତର ଭାସୋକଟମି ଅପରେସନ କର ଦିଆ ଏକ ଆସ୍ରମ କୋ ଜା କର । ସାରେ ବାବା ଲୋକ, ଆସ୍ରମ କା ସବ ବ୍ରହ୍ମଚାରି, ପୁରେ ଏକ ସୋ ଲୋକ ଏକ ଦିନ ମେ । କ୍ୟା କରେ ବେଚାରା , ଉନକା କୋଟା ପୁରା ନେହି ହୋ ରହାଥା ଇସ ମହିନେ । ଠିକ ଚଲ ରହା ନା ଦେଶ ହମାରା, ଚଲୋ ମା ବେଟେ କା ଜୟ ବୋଲୋ .."

ଜଗା ପକେଟ ନ ବାହାର କରସି ଗୁଟେ ବିଡି, ଫେର ରଖି ଦେସି । ଛାଡ ଦିଆସିଲି ଏଛେନ କାହାକେ ମାଗବ, ଆର ଇ ବିଡିନେ ବି କାଣା ଅଛେ ? ଟିକେ ଆଘୋନୁ ପ୍ରସାଦ

ସାଁଗେ ପିଇଛେ ଜେନ ପିସ୍ତଲ ତାର ନିଶା ଆର ଟିକେ ଥାଉ । ପ୍ରସାଦ ଆସିଚେ ବିହାର ନୁ ଚବନବାହାର ଆର ଗଁଜେଇ ଦଲି କରି ବନାସି ଜେନ ପିସ୍ତଲ ତାର ମଜା ଅଲଗା ।

ଘାଏ ଘାଏ ଜଗାକେ ଲାଗସି ଇ ମକରାଜାଲ ବାଗିର ଚିଜ କଟନ ସାର୍ଟ, ଇ ବସ୍ତା ବାଗିର ଜିନସ ପେଁଟ, ଇ ମଦ, ଗଁଜେଇ, ରାଏତ ରାଏତ ଯୁକ୍ତି ତର୍କ ଥି କାଣା ବଦଲେଇ ହେବା ଇ ଦେଶ କେ, ଆନି ହେବା ସାମ୍ୟବାଦ । ଆମେ ସଭେ ସତେ ସମାନ । ଆମର ଘରେ ପୁରସା ପୁରସାନୁ ହଲିଆ କୁଠିଆ ଥିବାର ଲୋକ ଆର ମୁଇଁ କାଣା ସମାନ । ଦୁଇ ଖଁଡି ଧାନ ମାସରି ନେଇ ସାରା ମାସ ଦିନ ରାଏତ ଖଟୁଥିବା ସେମନେ ଆର ଆମେମାନେ ଗୁଟେ ରାତି ମଦ ପିଇଦେସୁ ଦୁଇ ହଜାର ଟଁକାର, ସମାନ ।

ନିସାର ସୁରେ ପରେ, କେଭେ ଥରେ, ଜଗା କହି ଦେଇଥିଲା ତାଁକର ଚାଲିସଟା ହଲିଆ ଆର ସହେ ପଚାସ ଏକଡ ଜମିର କଥା । ଯୁକ୍ତି ତର୍କ କଲା ବେଲକେ ଏଭେ ତାର ସାଁଗ ମନେ ତାହାକେ କହେସନ ବୁର୍ଜୁଆ ବଲି । ସୁନବାକେ ଭଲ ନାଇଁ ଲାଗେ ହେତିର ଲାଗି ଯୁକ୍ତି ତର୍କନୁ ଧୁରେ ରହେସି । ବସି ରହେସି ତାର ତାର, ଗଂଗା ଢାବାର ତରାର ଇ ପଥର ଉପରେ । ଜନକେ ଦେଖୁଥିସି, ପାଖର ଫୁଲ ବୁଟାନେ ଲୁକଲୁକାନି ଖେଲୁଥିବାର ଜୁଲଜୁଲିଆ ପୋକମନକୁ ଦେଖୁଥିସି । ନାଇ ହେଲେ ଦେଖୁଥିସି କାହି ଧୁରେ ଜଲୁଥିବା ମରକୁରି ଲାଇଟକେ ।

କେଭେ ଥରେ ଜନ ଉକିଆନେ ପଚରାସି ବରଖା ଦୁବେ – "ତୁମହାରା କୁଛ ପ୍ରବ୍ଲେମ୍ ହେ ମିଷ୍ଟର ପଟ୍, ଆଇ ମିନ ମିଷ୍ଟର ପାତ୍ରୋ । ପରିକ୍ଷା ଠିକ ନେହି ଚଲ ରହା ହୈ ?"

କେଭେ ଥରେ ଲାଇବ୍ରେରି ନେ ପଚରାସି ଅଲକା ଦତ୍ତ –" କି ଗୋ କି ହଏଛେ ତୋମାର ?"

ସାଁଗମନେ କହେସନ, ସାଢେ ଛଅ ଫୁଟିଆ ଜଗା, ତାର ଗୁରା ତକତକ ଚେହେରା ଲାଲ ଗଲଗଲ ହେଇଜାଏସି ପରେ । କିଛି କହିନାଇ ପାରେ ଜଗା ଖାଲି ହସି ଦେସି । ଜଗା ଲାଇବ୍ରେରି ଜାଉଥିସି, ମାର୍କ୍ସ ପଢୁଥିସି, ଲେଲିନ ପଢୁଥିସି, ଚେ ଗୁଏଭରାର ଜିବନିକେ ଅନୁବାଦ କରୁଥିସି ଲୁକେଇ ଲୁକେଇ । ସବୁ ବେଲେ ତାହାକେ ଲାଗୁଥିସି କଁଟା ଗୁଟେ ଅଲଝି ଜାଇଛେ ଛାତିନେ । ଦିଲ୍ଲିର ଇ କୁତବମିନାର, ଲାଲକିଲ୍ଲା ଦେଖଲେ ଲାଗସି କେତେ ଲୁକର ରକତ ନେ ଗଢା ହେଇଚେ ଇ ସବୁ । କେନୁ ଆସିଥିଲେ, କାହିଁ ଗଲେ ଇ ରଜାମନେ ? କେତେ କେତେ ଜମି ଥିଲା ତାଁକର ? ଇତିହାସର ଅଁଧାର ଥି ହଜିଗଲେ, ଖାଲି ରହି ଜାଇଛେ ଜସ ଅପଜସର ନାଁଟେ ?

ନାଁ ର କଥା ସୋର ପଡିଗଲେ କଲା ପଡି ଜାଏସି ଜଗାର ମୁହଁ । କେତେ ଲୁକର ନୁ କେତେ କଥା ସୁନିଚେ ଇ ନାଁର ଲାଗି । ହାଇ ସ୍କୁଲନେ ପଢଲା ବେଲକେ ଟୁକେଲ ମନେ

ଡାକୁଥିଲେ ଜଗ ବଲି । ହସି ହସି କହୁଥଲେ– "ତୁଇ ତ ଗୁଟେ ଜଗ, ସବୁ ପାଠ ରହି ଜଉଛେ ତୋର ମୁଡେ ପାଏନ ବାଗିର ।" ଜଗାକେ ଇଟା ଉସତ ଲାଗୁଥିଲା କେଭେ କେଭେ । ହେଲେ ପିଲାମନେ ତାହାକେ ଡାକୁଥିଲେ – ଲାସ । ସେ ବୁଝି ନାଇଁ ପାରୁଥାଇ ଇଟା ସେମାନେ କାଁ କରି କହୁଛନ ? ପିଲାମନକୁ କହୁଥଲା – "ବଁଚିଛେ ହୋ, ଲାସ ବଲୁଛ କେନତା ?" ପିଲାମନେ ଖାଲି ହଁସୁଥିଲେ ମୁଲୁର ମୁଲୁର ।

ଜଗା ଦିନେ ପ୍ରଦିପକେ ଏକଲା ଡାକିକରି ପଚରାସି – "କହ ତ ବୋ ମତେ ତମେ ସଭେ କାଁ କରି ଲାସ ବଲସ ?"

"ଦେଖ, ତୁଇ ତ ସୁତରଟେ, ସୁଁଦର ଟେ, ଗୁଲଗୁଲିଆ, ଗୁରା ତକତକ, ବୁଠି କୁମଟି ଘରର ଗୁଟେ ବଲି ପିଲା ବଲି ଘରୁ ନାଇ ବାହାରୁ ରାଏତ ହେଲେ । ଆମର ସାଁଗେ ନାଇ ଖେଲୁ, ନାଇ ଗାଧିଜଉ ବଁଧକେ । ତୁଇ ଜାହିଁ ଗଲେ ତୋର ସାଁଗେ ଜାଏସି ତମର ଗୁଟେ ହଲିଆ । ହେନତା ତ ଇସକୁଲର ଖାତାନେ ବି ତୋର ନାଁ ଲେଖା ହେଇଛେ – ଶ୍ରୀ ଜଗଲାସ ପାତ୍ର । ଟୁକେଲ ମନେ ତତେ ଡାକସନ – ଜଗ ଆର ଆମେ ଡାକସୁଁ – ଲାସ ।" ପ୍ରଦିପ ରହି ରହି କରି କହେଲା ସବୁ ଆଡେ ଦେଖି ଦେଖି ।

"ହଏ ଜେ ମତେ ଲାସ ବଲସ କାଁକରି, ମୁଇଁ ତ ଦେଖ ବଁଚିଛେ । ଗାଁ ସଭେ ଜେନତା ଡାକସନ ତମେ ବି ତ ଜଗା ବଲି ଡାକତ ?" – ସେସ ଆଡକେ କାଁଦ କାଁଦ ହେଇ ଜାଉଥିଲା ଜଗା ।

ପ୍ରଦିପ ରାଗି ଗଲା କି କାଣା ଜେ, କହେଲା– "ହଏରେ ବେଡା, ଇଟା କାଣା ନାଇ ଜାନବାର, ଘରକେ ଜିବୁ ଡିକସିନାରି ଦେଖବୁ, LASS ବଏଲେ କାଣା ?"

ଦୁଇ ଦିନ କିଛି ନାଇ ଖାଇ ଜଗା, ଇସ୍କୁଲ ବି ନାଇ ଜାଇ । ଖାଲି କାଁଦୁଥାଏ, କାଁଦୁଥାଏ ବି ତାର ମା । ତାର ଦାଦା ମହିମା ପାତ୍ର ଥିଲେ ରମାଇ ହାଇ ସ୍କୁଲର ପହେଲା ସଭାପତି, କାହି କେତେ ଦିନ ତଲେ । ସେ ଇସ୍କୁଲକେ ଗଲେ, ହେଡ ମାଷ୍ଟରଁକୁ ଭେଟଲେ । ପିଲାଁକର ମଜାର ଲାଗି ଗୁଟେ ପିଲାର ଜିବନ ବରବାଦ ନାଇ ହେଇଜାଉ, ଆମେ ହେତିର ଲାଗି କାଣା ଇ ଇସ୍କୁଲ କରଥିଲୁ । ସଭେ କଥାକେ ବୁଝଲେ , ହେଡ ମାଷ୍ଟର ପାରଥନା ସଭାନେ ସାଫ ସାଫ କହେଲେ – ଦେଖ ଦସମ ଶ୍ରେଣିର ଜଗଲାସ ପାତ୍ରର ନାଁ ଏଭେ ସବୁଠାନେ ଲେଖା ହେବା Mr. J. Patra, ସଭେ ତାହେକେ ଡାକବ ଜଗା ବଲି, ଗାଁ ନେ ଜେନତା ସଭେ ତାହାକେ ଡାକସନ । ଦେଖୁନ ଦେଖୁନ ସରିଗଲା ଗୁଟେ ବରସ । ଏକାଦସ ସ୍ରେଣିର ଛ ମାସ ପରେ ଇସକୁଲ ସେସ ।

ଗୁଟେ ଜିଦ ଜଗାର ଜାହା ହଉ ଇ ପାଟନାଗଡର କଲେଜନେ ସେ ନାଇଁ ପଢେ, ମୁହୁଁ ନାଇ ଦେଖେ ହେ ସାଁଗମନକର । ସତେ ବି ଜଗା ଏକଲା ପାଇଥିଲା ଫାସ୍ଟକ୍ଲାସ । ନୂଆଁ

ନୂଆଁ ହେଥିବାର ଇ କଲେଜନେ ପଢବା କାଁ କରି । ସମଲପୁରର ଜି.ଏମ କଲେଜନେ ପଢଲା ଜଗା, ସମ୍ବଲପୁରୁ ଆସଲା ଦିଲ୍ଲି, ଜେ.ଏନ.ଇଉ. ।

ମହିମା ପାତ୍ରର ଗୁଟେ ବଲି ଓପନ, ତାର ନାତି ହେବା ସାହେବ, ଦେସ ଚଲାବା, ଜେତେ ପଏସା ପଡୁ, ଖରଚା କେ ଡର ନାଇଁ, ଇ ସବୁ ତ ତାର । ପଁଚସତରି ବରସ ହେଲାନ ବୁଢାକେ ହେଲେ ଦିନକ ଦୁଇଥର ଖେତକେ ନାଇଁ ଗଲେ ନାଇଁ ଚଲେ । କୁସେର ବାରି ପାଏନ ଦିଆ ହେବା କେଭେ, କେନ ଡୁଲିନେ ବୁନା ହେବା କାଣା, ଆଏଜ କାଣା କଟାହେବା, ଦିନକ ଦୁଇଥର କହୁଥିସି ହଲିଆ ମନକୁ । ସଭେ କହେସନ କୁକୁରା ଡାକଲା ବେଲକେ କି ବେଲବୁଡାର ଭୁତଭୁଡିଆ ଅଁଧାରନେ ଜଦି କିଏ ଗାଁ ମୁଡସେ କଲା ଛାଁଏ ଗୁଟେ ଦେଖବ, ନାଇଁ ଡରବ ହେଟା ମଟିଆ ନାଇଁ ସେ , ବୁଠି କୁମଟି ଆଏ , ଖେତ କେ ଜଉଥିଲା କି ଖେତୁ ଫିରୁଥିଲା ।

ତାର ବାପା କରୁନା ଏତେ କଥା ନାଇ ଜାନନ, ତିରିସ ବରସ ହେଲାନ ତାଁକର ଦୁକାନ ଭଲ ତ ସେ ଭଲ । ଦୁକାନଟା ଖାଲି ଲୋକ ଦେଖାକେ, ତାଁକର ମୁଲ ବେପାର ମହାଜନି । ଦସ ପଇସିଆ କଲନତରନେ ଲୁକର ବିପଦ ଆପଦବେଲେ ରାତିବିକାଲି ଟଁକା ଦେବାରଟା କାଣା କମ କଥା ? ପାଟନାଗଡର ସଭେ କହେସନ କରୁନା ବେଲେ ସତେ କରୁନା, ନାମ ଜେନତା କାମ ସେନତା । ଜେତେ ଟଁକା ମାଗବ ଜେତେ ବେଲେ ସେ ଦେଇଦେବା ସାଁଗେ ସାଁଗେ ଖାଲି ଲେଖିଦେବ ଖଁଡେ ଷ୍ଟାପ ।

ଜଗା ଇ ସବୁ ସୁନିଛେ, ଦେଖିଛେ ଛୁଆ ବେଲୁ । ଇ ସବୁ ଏକା ଦେଖିଛେ ଆର କିଛି ନାଇଁ ଦେଖି । ନାଇଁ ଦେଖି ପାଟନାଗଡର ସୁବର୍ନରେଖା ନଏଦ, ତାର ଝଲଝଲ ପାଏନ, ନାଇଁ ଦେଖି ହରିସଂକର ଜିବାର ବାଟର ଚାଁରବୁରେଥି ଲହଁପି ପଡୁଥିବାର କେଁଡା କେଁଡା ଚାଁର, ଟୁପ ଟୁପ ଥିପୁଥିବାର ମହମହ ମହୁଲ, ଲାଲ ଟହଟହ ଫଲସା ଫୁଲ । ଖାଲି ସୁନିଛେ, ହଜାରେ ବରସ ଧରି ରଜଧାନି ଥଲା ଆମର ଇ ଗାଁ, ଏଭେ ଇ ସହେ ବରସ ତଲେ ବି ।

ଇ ସବୁ ଭାବଲେ ଜଗାକେ ବଡା ଅଡୁଆ ଅଡୁଆ ଲାଗସି । ପରିକ୍ଷା ସରୁଛେନ ତାହାକେ ଫରିବାକେ ପଡବା ପାଟନାଗଡ । ସୋର ପଡସି କିଏ କେନେ ସୁନିଥିବାର ଗୁଟେ କଥା, ଇତିହାସର ହାତି ପରେ ଜେନେ ସୁନାକଲସ ଢାଲସି, କେଭେ ଦିନେ ସେନେ ନ ପରିସ୍ରା କରସି ।

ଜଗା ଉଠସି, ହସଟେଲ ଆଡକେ ଚାଲସି ପାହେ ପାହେ ।

*******

ଦିଲ୍ଲିନୁ ଫିରି କରି ଘରେ ବସି ବସି ଦୁଇ ଦିନ ହେଲା ଖାଲି ଗୁଟେ କଥା ଭାବୁଥଲା ଜଗା– କହେବା କି ନାଇଁ କହେ ?

ଚଉବଖରି ଘର । ସବୁ ଫାଲେ ଉଚା ଉଚା ପିଁଢା, ମଝିନେ ବଡଟେ ଦୁଆର । ଖରା ଦିନେ ସଭେ ଜେ ଜାର ଫାଲେ ସୁଇସନ । ସଭେ ବଏଲେ କିଏ କିଏ କି, ଜଗାର ସାଁଗେ ଘରର ଚାଏର ଲୋକ, ବାକି ହଲିଆ କୁଠିଆ ପାଁଚ ଛଅ ଝନ । ଜଗାର ବାପା ମା ସୁଇସନ ଭିତର ଫାଲର ଘରେ, ତାର ଦାଦା ବୁଢା ସୁଇସି ଗାଁ ଖୁଲି ଫାଲର ପିଁଢାନେ, ପସଚିମ ଫାଲର ପିଁଢାନେ ସୁଇସି ଜଗା, ପାଖେ ମାହାପୁରୁ ଘର । ପୁରୁବ ଆଡର ପିଁଢାଥି ହଲିଆମନେ, ହେ ଆଡେ ଗୁହାଲକେ ବାଟ ।

ଜଗା ଭାବୁଥିସି କହେବା କି ନାଇଁ କହେ ତାର ଫୁଲବ୍ରାଇଟ ଫେଲୋସିପର କଥା । ତାର  ମା ସୁନଲେ କାଣା ଭାବବା, ତିନ ବରସ ଲାଗି ଇଂଲଣ୍ଡ ଜିବାର କଥା ସୁନଲେ କାଣା ବଲବେ ତାର ବାପା ? ଖରାଦିନିଆ ଇ ଗୁଲଗୁଲିନେ ସାରା ରାଏତ ସୁଇନାଇଁ ପାରେ ଜଗା । ଉପରେ ବୁଲୁଥାଏ ସିଲିଂ ପନଖା ।

ସକାଲ ହେଲେନ ଗହଲ ଚହଲ । ବାରିର ମୁନଗା  ଡାହିନେ ମଏନା, ଆମ ଗଛେ କୁଇଲି, ପନସ ଗଛେ କୁଆ, ଗୁହାଲେ ଗାଏ ଦାମୁର । ଜଗା ଉଠି ପଡସି ଝାଏଁନୁ । ତାର ଦାଦାବୁଢା  ଫିରିଥିସିନ ଖେତୁ ଗାଧିପାଧି କରି । ଜଗା ଭାବସି ବୁଢାକେ କହେମି ପହେଲା ଇଂଲଣ୍ଡ ଜିବାର କଥା । ଦେଖୁ ତ କାଣା କହୁଛେ ବୁଢା ।

ମହିମା ପାତ୍ର ପୁଜା ଘରୁ ମୁଡିଆ ମାରି କରି ଆସଲେନ ବସସନ ଚଉକିନେ । ଖାଏସନ ଇଟଲି ଆର ସଁବର । ଜଗା ବି ଆଏସି ରଁଧାଘର ଆଡୁ ହାତେ ଧରିଥିସି ଚାହା କପ, ପଚରାସି – “ଦାଦା, ଏଭେ ତମର ଦିହିପା କେନତା ଅଛେ  ?”

ଦେହ ଆଉ କ୍ୟଣ କିରେ, ଚାଲିଛି ସେମିତି । ପଂଚସ୍ତରୀ ପୁରି ଚାଲିଲା  ଛସ୍ତରି  । କାହିଁ କଉଠି ରହିଲା ମୋର ଜନମମାଟି, ପିଲାଦିନ ଆଜିକାଲି ଭାରି ମନେ ପଡୁଛି । ଆମର ଯଉ ସମୁଦ୍ରକୂଳିଆ ଗାଁ, ବ ର,  ଜାହାଜ, କେତେ ହାଉଯାଉ, ସବୁ ମନେ ପଡୁଛି  । ଜାହାଜ ଯାଉଥିବ ପୁଙ୍ଗା ବାଜୁଥିବ .. ଲୋକ..

ତମେ ଜାହାଜନେ ବସିଛ ଦାଦା,  ବିଦେସ ଜାଇଛ ? ଜଗା ପଚରାସି ତାର କଥା ଆଡକେ ବୁଢାକେ ଆନବାର ଲାଗି  ।

ଚମକି ପଡସନ,  ମହିମା ପାତ୍ର, ଜଗା ଆଡକେ ଦେଖସନ, ନିସାସ ଛାଡସନ ଫଁ କର. ତୁମ ପଡସନ ଟିକେ ଫେର କହେସନ, କାଣା ଭାବି କରି  ।

ହଁ ରେ, ଥରେ ବସିଥିଲି । ବସିଥଲି ବୋଇଲେ ଅଦ୍ଧବାଟ ଯାଇଥିଲି । ଜାହାଜରେ ଲାଗିଗଲା ନିଆଁ । ହଜାର ହଜାର ଲୋକ ବସିଥିଲେ, ବଡ ଜାହାଜଟା ଥିଲା । ମାଦ୍ରାଜରୁ ଯାଉଥିଲା ରେଙ୍ଗୁନ, ବୋଝେଇ ହୋଇଥିଲା ଝୋଟ,ନଡିଆ, ଲଙ୍କା, ଧୂଆଁପତ୍ର ଆଉ ଦଳେ ଘୁଷୁରି । କେମିତି ତ ଲାଗିଗଲା ନିଆଁ, ଶହ ଶହ ଲୋକ ରେ ବାପ, ସମୁଦ୍ରରେ ଡେଇଁ

ପଡିଲେ, କିଏ କୁଆଡେ ଗଲା ପତ୍ତା ନାଇଁ । କପ୍ତାନକୁ ଧନ୍ୟ କହିବା ସଂଧ୍ୟା ବେଳକୁ ଜାହାଜକୁ ଭିଡି ଆଣିଲା କୂଳକୁ ।

"ଦାଦା, ଇଟା ସତ କଥା ତ, କାହି କେଭେ ତ ନାଇଁ କହିଥାଇ ଏତକି ଦିନ ତକ, ତମେ କେନତା କରି ଆସଲ ସେନୁ ଜେ .. ?"

ହଁ ରେ, କାହାକୁ କହି ନ ଥିଲି ଆଜିଯାଏଁ । ଭାବୁଥିଲି, ମଲା ଯାଏଁ କାହାକୁ କହିବିନି ଏଇ ଗୁମର । ହେଲେ, କାଲି ରାତିର ସେଇ ସପନ ପରେ ଭାବିଲି ତତେ ତ କହିବାକୁ ହେବ ମରିବା ଆଗରୁ । ନୋହିଲେ ତୁ କେମିତି ଜାଣିବୁ, ଆମର ଏଇ ଜମି ବାଡି, ଧନ ଦରବ ଆସିଲା କେମିତି, ଆମ ଜନମ ମାଟି ଥିଲା କଉଠି, ଆଉ ତୋ ନା ବି ଜଗଲାସ ହେଲା କେମିତି ?

ଜଗା ଚମକି ପଡସି, ତାର ନାଁ ସାଁଗେ ଇ କଥାର କାଏଁ ସଂପର୍କ ? ଜଗା ବସସି ପାଖର ଚଉକିଥି, ବୁଢା ଉଠି ପଡସି ଆର ଜାଏସି ତାର ସୁଇଲା ଘରକେ । ହାତେ ଧରି କରି ଆଏସି ଗୁଟେ ରୁପାର ବାକସ । ବାକସ ସାରା କେତେ ରକମର ତାରକସି କାମ । ଭିତରୁ କାଢସି ଗୁଟେ ଖବର କାଗଜ, ଧରେଇ ଦେସି ଜଗାର ହାତକେ । ଜଗା ଦେଖସି କାହିଁ କେତେ ଜୁନହାଁ ଇ ଖବର କାଗଜ, ଆଶା The Oriya Weekly, Berehempur , ତା୯ ଜୁଲାଇ, ୧୯୧୭, ଦ୍ୱିତୀୟ ବର୍ଷ , ୪୩ ସଂଖ୍ୟା । ସେସ ପୁସଟା ବାହାରିଥିସି –

**ଜାହାଜ ଦାହ**

**ଗତ ପୂର୍ବ ରବିବାର ଦିନ ଗଞ୍ଜାମ ବାରୁଅ ବ ରରେ ଚିଲିକା ନାମକ ରାଙ୍ଗୁନ ଜାହାଜରେ ହଠାତ୍ ଅଗ୍ନିଜାତ ହୋଇ ବିଶେଷ କ୍ଷତି କରିଅଛି । ଜାହାଜରେ ୧୫୦୦ ପ୍ରାୟ ଯାତ୍ରୀ ରାଙ୍ଗୁନ ଯିବା ନିମନ୍ତେ ଏକତ୍ରିତ ହୋଇଥିଲେ ଏବଂ ନଡିଆ, ଧୂଆଁପତ୍ର, ମରିଚ, ଝୋଟ ଇତ୍ୟାଦି ଜିନିଷ ମଧ୍ୟ ସେଠାରେ ଥିଲା । ରବିବାର ଦିନ ମଧ୍ୟାହ୍ନ ଏକ ଘଣ୍ଟା ବେଳେ ଅଗ୍ନି ଦୃଷ୍ଟି ଗୋଚର ହେଲା । ଯାତ୍ରୀମାନେ ସବୁ ଅଧମ ଲୋକ । ତତ୍କ୍ଷଣେ ସେମାନଙ୍କୁ ସତର୍କ କରାଇ ଦିଆଗଲା । ଯାତ୍ରୀମାନେ ଭୟ ବିହ୍ୱଳ ଓ କିଂକର୍ତ୍ତବ୍ୟବିମୂଢ ହୋଇଗଲେ ଏବଂ ସେମାନଙ୍କ ମଧ୍ୟରୁ ଶୁଣାଯାଏ ପ୍ରାୟ ଶହେ ଜଣ ପାଣିକୁ ଲମ୍ଫଦେଲେ । ପ୍ରାୟ ଦୁଇ ଘଣ୍ଟା ବେଳେ ବାରୁଅ ଉପକୂଳରୁ ଡଙ୍ଗାମାନ ସମୁଦ୍ର ଭିତରକୁ ପ୍ରେରିତ ହେଲା । ସ୍ଥାନୀୟ କେଉଟ ଓ ନୋଳିଆମାନେ ଅସାଧାରଣ ସାହସ ସହକାରେ ଯାତ୍ରୀମାନଙ୍କୁ ସାହାଯ୍ୟ ଦେଇ ସେମାନଙ୍କ ପ୍ରାଣ ରକ୍ଷା କରିଥିଲେ । ସେ ସମୟକୁ ପ୍ରତିକୂଳ ପବନ ବୋହୁଥିଲା । ତଥାପି ଏମାନେ ଯେପରି କାର୍ଯ୍ୟ କରିଥଲେ, ତାହା ଆଶ୍ଚର୍ଯ୍ୟଜନକ । ଏଣେ ବୋଇତରେ ଅଗ୍ନି ନିଭାଇବା ନିମନ୍ତେ କେତେ ଯତ୍ନ କଲେ ମଧ୍ୟ ଅଗ୍ନି ନିର୍ବାପିତ ନ ହେବାରୁ ପ୍ରାୟ ୪ଟା ବେଳେ ଜାହାଜକୁ କୂଳ ଆଡକୁ ଟଣାଗଲା । ବଡକଷ୍ଟରେ ଯାତ୍ରୀମାନେ ଜାହାଜରୁ ଓହ୍ଲାଇଲେ । କିଏ କିଏ ଓହ୍ଲାଇ ନ ପାରି ପାଣିରେ**

**ପଡି ପ୍ରାଣତ୍ୟାଗ କଲେ । କୂଳରୁ ଏହି ଦୁଃଖଦ ଓ ହୃଦୟବିଦାରକ ଦୃଶ୍ୟ ଦେଖି ଅନେକ ବ୍ୟକ୍ତି କାନ୍ଦୁଥାନ୍ତି । ତଥାପି ସମୁଦ୍ର ଭିତରକୁ ଯାଇ ସହାୟ ହେବାର ସମସ୍ତଙ୍କ ଭାଗ୍ୟରେ ନାହିଁ । ଅନେକ ଯାତ୍ରୀଙ୍କର ଜିନିଷପତ୍ର ମିଳିଲା ନାହିଁ । ବାରୁଅ ତାଲୁକଦାର ବିପନ୍ନ ଯାତ୍ରୀମାନଙ୍କୁ ଯଥାସାଧ୍ୟ ସାହାଯ୍ୟ ଦେଇଥିଲେ । ସହସ୍ର ସଂଖ୍ୟକ ବିପନ୍ନ ଯାତ୍ରୀଙ୍କୁ ରହିବା ଓ ଖାଇବାର ବ୍ୟବସ୍ଥା କରିଥିବା ବାରୁଅ ଖାଡଙ୍ଗାଙ୍କର ପ୍ରଶଂସାର କଥା ।**

ଜଗା ସବୁକେ ଜୁଡି ନାଇଁ ପାରୁଥାଇ । ଦେଖୁ ଥିଲା ବୁଢାର ମୁହୁଁକେ, ପାତ୍ର ବୁଢା ହଜି ଜାଇଥିଲା କେନ ଧୂର ଅତିତନେ । ଫେର ବୁଢା କହେଲା–

"ମତେ ସେତେବେଳେ ସତର କି ଅଠର । ଯୁଦ୍ଧ ପରା ଲାଗିଥାଏ ବିଦେଶରେ । ସରକାର ଲୋକ ଖୋଜୁଥାନ୍ତି କାମପାଇଁ । ବାରୁଅରୁ ଆମେ କେତେ ଜଣ ଠିକ କଲୁଁ, କାମ ପାଇଁ ଜାହାଜରେ ରେଙ୍ଗୁନ ଯିବା । ସେ ଦିନ ଥାଏ ରବିବାର, ସକାଳେ ଆସିଲା ଜାହାଜ ମାଦ୍ରାଜରୁ । ଜିନିଷ ସବୁ ଲଦା ହେଲା, ଆମେ ବି ବସିଲୁ ରେଙ୍ଗୁନପାଇଁ ଟିକଟ କରି । ଅଳ୍ପ ବାଟ ଯାଇଛି ଜାହାଜରେ ଲାଗିଲା ନିଆଁ । ଧୂଆଁପତ୍ର, ଲଙ୍କା ଓ ଘୁଷୁରିର ପୋଡା ଗନ୍ଧରେ ଆଖି ପୋଡୁଥାଏ, ଛିଙ୍କ ଆସୁଥାଏ, ରୁନ୍ଧି ହେଇଯାଉଥାଏ ନାକ । ଚାରି ଆଡେ ଧାଁ ଦଉଡ ମଡାଦଳା । ଯିଏ ଯାର ଡେଇଁ ପଡିଲେ କିଛିଲୋକ ପାଣିକୁ । ଅଁଧାର ବି ଘୋଟି ଆସୁଥାଏ , ସବୁ ଆଡୁ ଶୁଭୁଥାଏ ବିକଳ ଡାକ । ବାପାରେ , ତତେ ମିଛ ମତେ ସତ ସେତେବେଳେ କୁଆଡୁ ଧାଇଁ ଆସିଲା ଗୋଟିଏ ସାହିବାଣୀ, ହାତରେ ଧରିଥାଏ ଏଇ ବାକ୍ସ । କଣ କହୁଥାଏ ତ ମୁଁ ଜାଣିନି , ଖାଲି ମଝିରେ ମଝିରେ କହୁଥାଏ ମିଷ୍ଟର ଜଗଲାସ ମିଷ୍ଟର ଜଗଲାସ । ମୋ ଆଡକୁ ଦେଖି କଣ କହିବି ହେଉଛି, ହଠାତ୍ ଦେଖିଲା ପାଣିରେ ପହଁରୁଥବା ଗୋଟେ ସାହେବକୁ । ପାଗଳୀ ପରି ଚିତ୍କାର କରି ଡେଇଁ ପଡିଲା ପାଣିକୁ , ସେତେ ବେଳେ ଏକା ମୋ ଆଗରେ ଥୋଇଦେଲା ଏଇ ବାକ୍ସ ।"

ମହିମା ପାତ୍ର ଥରୁଥଲେ, କିଏ ଜାନେ କାଁକରି । ଦିହି ସାରା ଝାଳ । କିଛି ବୁଝି ନାଇ ପାରୁଥାଇ ଜଗା । ପଚରାଲା – କାଣା ଥଲା ଇ ବାକସନେ ?

ମହିମା ପାତ୍ର ଚାରି ଆଡେ ନିଘା କଲେ, କାହିଁ ନାଇ ଥାଇ କିଏ କଲେ କଲେ କହେଲେ– ଭର୍ତି ହେଇ ଥିଲା ସୁନା ଟଙ୍କା । ମୁଁ ସେତେବେଳେ ଜାଣି ନ ଥିଲି କଣ ଅଛି ଏଥିରେ । ମତେ ଲାଗୁଥିଲା ସାହେବାଣୀ ମତେ ଖୋଜି କି ମାଗିବ ଏଇ ବାକ୍ସ । ଜାହାଜରୁ କୂଳକୁ ନେଇ ଆସିଲି, ମୋର ଜଣେ ବି ସାଁଗ ଫେରିଲେନି କୂଳକୁ । ଅଁଧାରରେ ଡରି ଡରି ଘରକୁ ଆସିଲି । ଘରେ ଆଉ କାହାକୁ କହିନି, ବାପାକୁ, ମାଆକୁ, ଭାଇମାନଙ୍କୁ । ଲୁଚେଇ କି ରଖିଲି ଅନେକ ଦିନ । ଦିନେ ଏମିତି ତେନ୍ତୁଳି ବସ୍ତା ଭିତରେ ପୁରେଇ ନେଇ ଆସିଲି ଏଠିକି । ଥୋଡିଆ ବଳଦ ଗାଡିରେ ବସି ବସି ସାତ ଦିନରେ ଆମେ ପହଁଚିଲୁ ପାଟଣାଗଡ ।

ଏଇ ଜମିଜମା କିଣିଲି ଏଇଠି, ବାହା ବି ହେଲି ଏଇଠି । ସେ ଦିନରୁ ଆଉ ଯାଇନି ବାରୁଅ ।

ପ୍ରଥମେ ବେଳେ ବେଳେ ଭୟ ମାଡୁଥିଲା ଇଂରେଜମାନେ ଜାଣି ଯିବେ କି ? ଯୁଦ୍ଧ ସଇଲା, ଦୁଇ ବର୍ଷ ବିତି ଗଲା, ତେବେ ମୁଁ ବାହା ହେଲି । ହେଲେ ସନ୍ତାନ ସୁଖ ପାଇଲି ନାହିଁ, ଦେଖୁ ଦେଖୁ ଦଶ ବର୍ଷ ବିତି ଗଲା । ମଝିରେ ମଝିରେ ରାତିରେ ସେଇ ସାହେବାଣୀକୁ ଭେଟୁଥାଏ ସ୍ୱପ୍ନରେ । ସେ ମତେ କଟମଟ କରି ଖାଲି ଅନାଉଥାଏ , କଣ କଣ କହୁଥାଏ ସେ ଜାଣେ । କାହାକୁ କିଛି କହିପାରେ ନି , ଉଠିପଡେ, ପାଣି ପିଏଁ ଓ ପୁଣି ଶୋଇଯାଏଁ । କେତେ ଦିନ ପରେ ମତେ ଲାଗିଲା ମୁଁ ସାହାବ ଦେବତାକୁ ପୂଜା କରିବା କଥା । ଗଧୋଇବା ବେଳେ ପାଣି ଦିଏଁ ଜଗଲାସ ନାଁରେ । ଦୁଇ ବର୍ଷ ସକାଳେ ଆଉ ସଂଧ୍ୟାରେ ପାଣି ଦେବା ପରେ ଜନ୍ମ ହେଲା ତୋ ବାପା କରୁଣା, ସାହେବ ଦେବତାର କରୁଣା ବୋଲି ତା ନାଁ କରୁଣା ।

ଟିକେ ଥାକସନ ମହିମା ପାତ୍ର , ଫଁ କରି ନିସାସଟେ ଛାଡସନ, ଜେନତା ଆଏଜ ସେ ସବୁ କହିଦେବେ, ଜେନଟା କାହାକେ ନାଇ କହି ଏତକି ଦିନ । କାଏଲ ରାଏତନୁ ଘାଁଟି ହଉଥିଲା ପେଟ, ସେ ସପନ ଦେଖଲାବେଲୁ । ଜଗା ପଚରାସି- ଦାଦା ପାଏନ ପିଇବ ? ମହିମା ପାତ୍ର ହଁ କରସନ । ଜଗା ରଁଧା ଘର ଆଡକେ ଜାଏସି ପାଏନ ଆନବାକେ ।

ମହିମା ପାତ୍ରକେ ଲାଗଲା କେଡେ ଟେ ବଡ ହଇଗଲାନ ଆମର ଇ ଜଗା । ପୁରା ଗୁଟେ ସାହେବ ବାଗିର ଗୁରାତକ ତକ, ଉଚା ପୁରା । ପାଏନ ଧରି କରି ଆସୁଥିବାର ଜଗାକେ ଦେଖି କରି ସେ କହେଲେ – ତୁ ପୁରା ସାହେବ ପରି ଦିଶୁଛୁରେ, ଆଣ ଆଣ ପାଣି ଦେ, ମଲା ପରେ କଉ କଥା..

ଜଗା ଚଉକିନେ ବସଲା ଆର ହଁସି ହଁସି ପଚରାଲା- ଦାଦା, ସେ ସାହେବେନ କେ ତମେ ଏଭେ ବି ସପନୁଛ ଭାଏଲ, ଇ ବୁଢା ବଏସେ ?

ନାଇଁରେ ବାପ, କଥା ସେମିତି ନୁହଁ, ଏବେ ବି ସେ ଆସେ, ତାର ବିଚିତ୍ର ପୋଷାକ, ତାର ଝୋଟ ପରି ଚୁଟି ଆଉ ସେଇ ବିଚକିଟିଆ ଗନ୍ଧ ସହ । କଟ ମଟ କରି ମତେ ଅନାଇ ରୁହେ, ମୁଁ ତ ତାକୁ ଡରରେ ମୁଣ୍ଡିଆ ମାରେ । ଝାଲରେ ଭିଜି ଜାଇଥାଏ ମୋର ଗୋଟା ଦେହ ସବୁ ଥର ସ୍ୱପ୍ନରେ । ତୋତେ ବୋଲି କହୁଛି, ଏ କଥା କେବେ କାହାକୁ କହିବୁନି ।

ବୁଢା ତୁମ ପଡସି । ଜଗା ଭାବୁଥିସି, ଦାଦିମା ମରବାର ହେଲାନ ବାର ପଁଦର ବରସ, ବୁଢାର ଅବଦମିତ ଇଚ୍ଛା ଏଭେ ସପନ ହେଇ କରି ଆସୁଛେ..

ହେଲେ କାଲି କଥା ଭିନେରେ ବାପ, ସାହେବାଣୀ ଖାଲି ହସୁଥାଏ ଖିଲିଖିଲି, ବଡ ଖୁସି ଥାଏ । କହିଲା- ଜଗଲାସ ମତେ ଭେଟିବ, ତାକୁ ପଠେଦେ । ମହ ମହ ବାସ୍ନା ବୁଣି ହଉଥାଏ ତା କଥାରୁ । ଦମ୍ଭକରି ମୁଁ ପଚାରିଲି- କଉ ଜଗଲାସ ? ପୁଣି ହସିଲା ସାହେବାଣୀ,

କହିଲା– ଆଉ କିଏ ତୋ ନାତି ? ତୁ ମତେ ପ୍ରତିଜ୍ଞା କରି କହି ନ ଥିଲୁ ତୋ ନାତି ହେଲେ ତା ନାଁ ଦେବୁ ଜଗଲାସ , ମିଷ୍ଟର ଜଗଲାସ ଜନ୍ମ ହେଇଛି ତୋ ନାତି ହେଇ ..

ଦାଦା ଜଗଲାସ ବଲି କେନ ସାହେବ ନାଁ ନାଇ ଥାଏ, ହେଟା ଡଗଲାସ ହେଇଥିବା ?

ହେଇଥିବା ରେ ବାପ, ସେ ଦିନର ବିକଲିଆ ବୋବାଳି ଭିତରେ ମୁଁ ଯାହା ଶୁଣିଲି । ତୋତେ କିନ୍ତୁ ଗୋଟିଏ ଅଳିରେ ପୁଅ, ତୁ ମୋର ଏକୋଇର ବଳା, କେବେ ବି ବିଦେଶକୁ ଯିବୁନି, କେବେ ବି କୁଆଡେ ଯିବୁନି ଉଡାଜାହାଜ କି ପାଣିଜାହାଜରେ । ଆମର ଧନ କଣ ହେବ ରେ, ଏ ସବୁ ତ ତୋର . . . ।

ଜଗା ହୁଟ୍ କରି ଉଠି ପଲାସି, ତାର ପଢା କୁଠରିକେ । ଦୁଲ କରି ପଡସି ତାର ପଲଁକ ଉପରେ । ଭାବସି ଇ ବୁଢାର ସପନର ବୁଟକା ବୁହି ବୁହି ସରି ଜିବା ତାର ଜିବନ ? ଲଣ୍ଡନ ସ୍କୁଲ ଅଫ ଇକୋନମିକସ ନେ ଭାରତର ଧନି ଆର ଗରିବ ଭିତରେ ବୈସମ୍ୟ ବିସୋନେ ତାର ଫେଲୋସିଫ ବି ? ଗୁଟେ ମିଛ ପଛେ ପଡି ଅର୍ଥ ସୁନ୍ୟ ହେଇଗଲା ଜେନତା ତାର ନାଁ ସେନତା ତାର ଜିବନ ।



# ସରଗିଫୁଲ

ଆମେ ତିନ୍ ଝନ ପିଲା ବେଲୁ ସାଁଗ, ଗିରଧାରି ଅନାଦି ଆର ମୁଇଁ । ସାଁଗ ହେଇ ଜାଇଛୁଁ କେତେ ଥର ଗୁଛା କାଟି, ମହୁଲ ବେଟି, ଟୋଲ ଝାରି । କାହିଁ ଗଲା ସେ ପିଲାଦିନ ଦେସ ସ୍ୱାଧିନ ହେଲା, ଗାଁ ଗାଁ ନେ ହେଲା ଇସକୁଲ । ଆମର ଗାଁନେ ବି ଇସକୁଲ ହେଲା ବେଲକେ, ଆମକୁ ହେଇଥିଲା ନ ବାର ତେର ବରସ । ଜେନ୍ ବରସେ ମରଡି ପଡଲା, ଜେନ ବରସେ ଆମର ଗାଁନେ ଦିଆହେଲା କାଁଗାଲିଖାନା, ଆମର ଗାଁନେ ଇସକୁଲ ହେଲା ତାର ପଛର ବରସେ । ମୁଇଁ ହେତ କି ବେଲକେ ପଢ଼ି ଜାନିଥିଲି ନ ଭାଗବତ, ମଥୁରାମଁଗଲ ଘୁସି ବି ସାରିଥିଲି ନ ଚାଣକ୍ୟର ପଁଦର କୁଡେଟା ସୁଲକ । ଜାନିଥିଲି ନ କୁଡେ ଖେଁଦା ପଁଡକିଆ, ମିସାଣ, କଟାଣ, ହରଣ, ଗୁଣନ । କାଗଜ ଆର ସିସାନେ ଲେଖି ପାରୁଥିଲି ଫାଲ ଫାଲ । ହେଲେ କାଠି କଲମନେ ଲେଖବାରଟା ଟିକେ କଡା ହେଉଥିଲା ଜେ.....

ଠିକ ଚାଲିଥିଲା ସବୁ । ତାଲଗଛକେ ଚଢ଼ି ପାରୁଥିଲା ଗିରଧାରି, ମହୁଗୁଡା ଝାରି ପାରୁଥିଲା ଅନାଦି, ଖାଲି ମୁଇଁ ଟିକେ ଥିଲି ଡରହା । ହେଲେ, ପାଏନ୍ ବୁଡିକରି ଚୁଆନେ ପଡିଥିବାର ଗରିଆ ଘିଚି ଆନି ପାରୁଥିଲି ମୁଇଁ । ଚୁଆଁନେ ପଡିଥିବାର ଗରିଆ ଘିଚବାରଟା ବଡ଼େ କଥା ନାଇଁସେ । ଆଘୋ ଦୁହି କାନେ ପକାବ ଟିକେ ଟିକେ ତେଲ, ଅଗଁଛିକେ ପିଁଧବ ଟାନକରି ଭିଡିକରି । ଝମ୍ କରି ଡେଗି ଦେବ ଚୁଆଁକେ । ଜୋରସେ ବଁଦ ରଖବ ନିସାସ । ତଲେ ହଁଦାଲି ଦେଖବ, ଦୁଇହାତେ, ଗରିଆ ହାତେ ପଡୁନ ସାର ତଲକେ ମାରବ ଗୁଟେ ଲାତ, ଦେଖ ଯେ ତମେ ପାଏନ ଉପରରେ, ତମର ହାତେ ଅଛେ ଗରିଆ ।

କାହିଁଗଲା ସେ ଦିନ ସବୁ, ଆମେ ଏଭେ ଭାବସୁଁ । କଥା ବିହେସୁ କେଭେ କେଭେ । ଇ ମନୋହରପୁର ପୁଲିସ୍ ପଡିଆନେ ଜନକ ରାତି ବସି କରି ଦୁଖ ସୁଖ ହେଲାବେଲକେ ପଡସି ଇ ସବୁ କଥା । ଛାଡି ଆସିଥିବାର ଗାଁ, ମାଁ ବୁଆ,ଖେତ୍ ଖଲା ପିଲାଦିନ, ସୋର ପଡସି ଘାଏ ଘାଏ । ସୋର ପଡଲେ ରୁଗ୍ ରୁଗ୍ କରସି ଛାତି । ଆମେ ନୁରିନୁରି ଭେଟ ହେସୁଁ ଅନାଦିର ରେକସାନେ ବସିକରି ପଲେଇ ଆଏସୁଁ ମଟଖାଇ ତଲର ଝାରକେ । ହେନେ ବସସୁଁ ଦିନସାରା କଥା ହେସୁଁ, ମୁହୁଁ ଫୁଲା ଫୁଲି ବି ହେସୁଁ, ସେ ଗୁଟେ କଥାକେ କେତେଥର ସୁନି କରିବି ବିତବିତା ନାଇଁ ହଉଁ । କେଭର କଥାଟେ ସୋର ପକେଇ କରି ଏଭେ ବି ହସସୁଁ ପେଟ ଫୁଲାଲା ତକ ।

ଅନାଦି ଇ ଥର କହେସି–

'ତମର ସୋର ଅଛେ କେଁ ବୋ ହେ ଥରର କଥା, ଆମେ ଜେନ ଚୁରେଇଥିଲା ମହାଜନ ଘରର ଧାନ । ଆମର କାର ଘରେ ତ କିଛି ବଲି କିଛି ଖାଏବାକେ ନାଇଁଥାଇ, ଧାନ ଦେଲେ କେଉଁଟେନ ବୁଢ଼ି ଦଉଥିଲା କାଁଚେ ଧାନକେ ଦୁଇ କାଁଚି ଭୁଜା । କହୁଥିଲା– "ହଏରେ ଗିରଧାରି, କେନୁ ଧାନୁଛୁ ଇ ଧାନ ଜେ ଜହ ଟିକେ ନାଇଁ ଆନତୁ, ଇ ଧାନେ ଭୁଜା ବଁଢ଼ିଆଁ ଫୁଟତା । ଭୁଜା ବୁଟକା ଧରି କରି ଆମେ ସଭେ ଜାଉଥିଲାଁ ଝାରକେ ।

"ହେ ମାଡ, ହେ ହିନସ୍ତା ହେଟା ପାସରି ହେବା କେଁ ବୋ ? ଜାନିଛୁ ହେ ବାବୁକେ ମୋର ରେକସାନେ ବସେଇକରି ଏଭେ ଦିନେ ଆନିଥିଲି ବେକଁନୁ ତାଁକର ଘରକେ । ସେ ଆର ମତେ ଚିନହିଁ ପାରତେ କେଁ, ମୁଇଁ ହେଲେ ଚଟ କରି ଚିନହିଁ ଦେଲି । ଭାଗରଥି ଛକନୁ ରୁଗୁଡିପଡ଼ା ଆଡ଼କେ ଗଲାବେଲକେ ଦୁଇଘର ଛାଡିକରି ତାଁକର ଘର । ଡାକଘର ଡେଗବୁ ତାହିଁରୁ ଗୁଟେ ଘର ଗଲେ"– ଗୁଟେ ନିସାସେ କହେସି ଅନାଦି ।

"ବିଚରା ଆମକୁ ବଁଚେଇ ଦେଲା ବଲତ୍ । ଗାଁର ଲୋକ ତ ଭାବୁଥିଲେ ଆମକୁ ପୁଲିସକେ ଦେଇଦେବେ । ମାହାଜନ ବୁଢ଼ା କହୁଥିଲା" ଏଡେ ବକଟେ ଛୁଆ ଏବେଠୁ ଚୋରି"– ଫଁକରି ନିସାସ ଛାଡସି ଗିରଧାରି । ତାର ସୋର ପଡିଯାଏସି ଚଉଦ ବରସର ତଲର କଥା ।

ମୋର ବି ସୋର ପଡସି ସେ ଦିନର ସବୁକଥା । ସରାବନୁ ପାଏନ ବୁଁଦେ ନାଇଁ । ଧାନ ଚଉଲ କଥା ଛାଡ ବଡ ବଡ ଗଛମନେ ସୁଖି ଜଉଥିନ ଠିଆ ଠିଆ । ମଡିଆ, ଗୁନଜି, କୁଦୋ ଦୁରା ଦୁରା ପାଇଥିଲେ କିଏ କିଏ । ଆମ ଆଇଥିଲା, ଆଇଥିଲା ମହୁଲ, ଚାଆଁର, କେନଦୁ ଆର ତାଲ, ହେଟା ଖାଇକରି ବଚୁଁଥିଲେ ଲୁକେ ଦିନ କାଲ । ମହାଜନ ବୁଢ଼ାର ଭଦରି ଘରର ମୁସା ଦୁଇଲ ବାଟୁ ଝରି ଆସୁଥିଲା ଦୁରା ଦୁରା ଧାନ । ସେ ବାଟେ ବାଉଁସ ନଲା କୁଚି ଦେଲେ ରୁକି ହଉଥିଲା ଅଡେ ବାଗିର ଧାନ । ଇ ଉପେ ଜାନିଥିଲା ଗିରଧାରି ।

ପହଁତିଆକେ ବୁଲିଗଲା ବାଗିର ଜାଇକରି ଧାନ ଆନୁଥିଲା, ସକାଲୁ ସକାଲୁ ଆମେ ଭୁଜା ଧରି କରି ଜଉଥିଲୁ ଝାରକେ କେଁଦୁ ଚାଆଁର ନୁରବାର ଲାଗି ।

"ଜାନିଛ ହେ ବାବୁର ବାପା ଝନେ ବଡ ଉକିଲ । ଏମପି ହେଇ କରି ଦିଲ୍ଲିନେ ରହିଥିଲେ ଛଅ ବରସ । ଇନର କଁଗ୍ରେସର ବଡ଼େଟେ ନେତା । ମୁଇଁ ଭାଗରଥି ଛକେ ରେକସା ରଖସିଁ ତ, ବୁଝା ବୁଝିକରି କେତେ କଥା ଜାନିଛେଁ ହେ ଘର ବାବଦେ । ଦେସ ସ୍ୱାଧିନ ହେଲା ବେଲକେ ଇସକୁଲ କଲେଜ ପଢୁଆ ପିଲାମନକୁ ଠୁଳେଇକରି ରଜାର ସାଁଗେ ଲଢୁଥିଲେ ଇକିଲ ଆଁଗ୍ୟା । ତାଁକର ପୁଓ ତ, ପିଲାବେଲୁ ନ ଗରିବ ଦୁଖିର ସେବା କରୁଛନ ଇ ଆଗ୍ୟାଁ । ଜାନିଛ ତାଁକର ନା ଓଁକାର ଦାଦା । ସାହେବ, ଅଫିସର, ମନତିରି ନେତା ସଭେ ତାଁକର କଥା ସୁନସନ, ସେ ବି ସୁନସନ ଗରିବ ଦୁଖି ଚାସି ମୁଲିଆର କଥା । ଫଟୁ କାଟସନ, ଖବର କାଗଜନେ ଛାପସନ ସେ ଫଟୁକେ । ସେଥି ବିରଝେଇଥିସନ ସରକାରକେ । କେଭେ କେଭେ ଭାସଣ ଦେସନ ସଭାମନକୁ ଆରୁ ଲେଖସନ୍ ବି ଖବର କାଗଜନେ । ବଡ଼େଟେ ଲୋକ । ହେଲେ ସମକର କଥା ବୁଝସନ୍, ସମକର କଥା ମାନସନ ।"

ଅନାଦି ଇ କଥା କହେଲା ବେଲକେ ମୋର ସୋର ପଡୁଥିସି ହେଦିନ ଦୁଇପହରର କଥା । ଗାଁର ମଡୁଆସାଲେ ବସିଥାଏ ବିରାଟ ପରବ । ବିରାଟ ପରବ ବସାଲେ ଗାଁକେ, ଗୋରୁକେ ରୋଗ ନାଇଁ ହୁଏ, ଚାସ ବାସ ଭଲ ହେସି କିଏ ଝନେ କହିଛେ ।

ଆମେ ତିନ ଝନ ବୁଚକେ ବୁଚକେ ପାଚଲା କେଦୁ ଧରିକରି ଫିରୁଥିଲୁଁ ସେ ବାଟେ । କିଏ ଝନେ କହେଲା– "ଏ ପିଲେ ରହ ।" ମତେ ଲାଗଲା ଇ ମନେ ଆମକୁ ମାଗବେ ପାଚଲା କେଦୁ ଭୋଗ ଲଗାବାକେ । ହେଲେ, ଦେଖୁନ୍ ଦେଖୁନ୍ ଧାଇଁ ଆଏଲେ ତିନ ଚାଏର ଝନ, ଚଡାଲ ଚଡାଲ ଗାଲେ ବସେଇ ଦେଲେ ଚଟକନର ଉପରେ ଚଟକନ, ଆମେ କିହେ ନାଇଁ ଜାନି ପାରି ସେତକି ବେଲ ତକ, କାଁଏ କରି ପିଟୁଛନ୍ ଇ ମନେ । ସେସେ କିଏ ଝନେ କହେଲା, ଏତକି ଟିକେ ଟିକେ ଅଛ, ଧାନ ଚୁରଉଛ ମହାଜନ ବୁଢ଼ାଘରୁ । ମଜା କରୁଛ, ଭୁଜା ଧରି କରି ଜଉଛ ଜଁଗଲକେ ।

ଏତକି ଲୁକର ଆଘେ କାଁଦି କାଁଦି ଆମେ କାଣା କହେମୁଁ ବଏଲା ବେଲକେ ଗାଁ ମୁଡସା ଆଡୁ ଆଏଲା ଗୁଟେ ଜିପ । ଜିପନେ ବସିଥିଲେ ଝନେ ଗେରୁଆ ପିନ୍ଧିଥିବାର ବାବା ଆଉ ତିନ ଚାଏର ଝନ ଜୁଆନ ପିଲା । ଆମକୁ ଛାଡି ଦେଇକରି ଜିପ ପାସକେ ଧାଇଁ ଗଲେ ସଭେ । ହେ ବେଲେ ଏନତା ଗାଡିମନକୁ ଆସିକରି ବାଁଟୁଥିଲେ ଚଉଲ । ଦୁଇ ତିନି ଦିନର ଅଢ଼ିଆ ମିଲି ଜଉଥିଲା ଗାଁର ସମକୁ ଏନତା ଗାଡି ଆସଲେ । ଆମକୁ ଦେଖିକରି ଝନେ ବାବୁ ପଚରାଲେ – "କାଣା ହେଇଛେ ?"

"ତମେ ଚଉଲ ନାଇଁ ନିଅଁ କାଏଁ ରେ ପିଲେ, କାଣା ହେଲା ତମର ? କାଁଏ କରି

ତମକୁ ପିଟୁଛନ ଇ ସଭେ, ପାଠ ସାଠ ପଢୁଛ କି ନାହିଁ ?" ଆମର ପାସକେ ଆସି କରି ପଚରାଲେ ଆର ଝନେ ବାବୁ । ସୁଆଁଲି ଦେଲେ ମୋର ଗାଲ, ଝାଲେ ଭିଜି କରି ଜଲି ଦଉଥିଲା, ଲୁହୁ ପୁଛି ଦେଲେ । ମତେ ଟିକେ ଉସାସ ଲାଗଲା । ଇ ଭିଡ ଭିତରେ ଆର ଏକଲା ନାଇଁ ଲାଗଲା ।

ଫେର କହେଲେ – "କାଏଁ ହେଲା ବୋ କହ, ତୁମ ପଡିଛ କାଁଏ କରି । ଚୁରାବାରଟା ଠିକ ନାଇଁସେ । ଯେତେ ଦୁଖ ଆସୁ, ବିପଦ ଆସୁ ଆମେ କମାମା, ଆମେ ଖାଏମା ।"

ମୋର ବୁଟକାକେ ହିଟେଇ ଦେଇ କରି କହେଲେ– "କେନୁ ପାଏଲ ବୋ ଏତକି ଗଛପଚା କେଁଦୁ ? ଆମକୁ ଦେବ କାଏ ଦୁରା । ଆର ଇ ସରଗିଫୁଲର ଡାଲ, ଇଟା ତ ମୁଇଁ ନେମି ଏକା, ତମେ ଦିଅ କି ନାଇଁ ଦିଅ ।"

କେତେ ଦିନର ଚିନହାର ବାଗିର ଲାଗୁଥାଏ ସେ ଆଁଗ୍ୟାର କଥା । ଆମର ସମକର ନୁ ନେଲେ ଦୁରାଦୁରା କେଁଦୁ । ଭାଗବାଁଟି କରି ଖାଏଲେ ସଭେ । ଆମକୁ ଦେଲେ ବୁଟକେ ବୁଟକେ ଚଉଲ । ହେ ଆଁଗ୍ୟା ମୋର ସରଗିଫୁଲର ଡାଲକେ ରଖଲେ କୁରତାର ମୁନାଥି । ହଁସ ହଁସି କରି ଆମର ହାତେ ଧରେଇ ଦେଲେ ଗୁଟେ ଗୁଟେ ଟଁକା, କହେଲେ ଇଟା ଇ କେଁଦୁର ପଏସା, ଫୁଲର ପଏସା ରହେଲା ଉଧାର । ଗାଁର ମେମର ବୁଢ଼ାକେ ଡାକି କରି କହେଲେ, ଦେଖୁନ ଆଁଗ୍ୟା, ପିଲା ଲୋକ, ଭୁକେ ଦୁଖେ ରହୁଛନ, ଭୁଜା ମୁଠେ ଖାଏମୁ ବଲି ଅଡେ ଦୁଇ ଅଡା ଧାନ ନେଇଛନ ମହାଜନ ବୁଢ଼ାର ଭଦରି ଘରୁ । ଇଥି କାଣା ମହାଜନ ବୁଢ଼ାର ସରିଗଲା ? ପିଲାଁକୁ ଏନତା ସମକର ଆଘେ ନାଇଁ ପିଟୁନ । କଲେକଟର ଆଁଗ୍ୟାକୁ ଆମେ ଭେଟି କରି କହେମୁଁ ଆପଣକର ଗାଁ ନେ ରାଁଧି କରି ଖାଦ୍ୟ ବାଁଟି ହେବା କାଏ ? ଆର ଇସକୁଲ ଟେ ଲାଗି ଆପଣ ଲେଖିକରି ଦଉନ ତ, ଆମେ ବି କହେମୁଁ ।

"ହେ ଆଁଗ୍ୟାର ନା କାଣା ବଏଲୁ ଓଁକାର ଦାଦା ?"– ପଚରାସି ଗିରଧାରି ।

"ଓଁକାର ପାଣିଗ୍ରାହୀ, ରାଧାରାନି ପଡାନେ ଜେନ ବଡ ବେଁକ ଅଛେ, ସେନେ କାମ କରସନ, ବେଲବୁଡାକେ ଠିଆ ହେସନ କଚରି ଆଘର ବରଗଛ ତଲେ । ଦେଖବୁନ, ଏଭେ ଦାଡି ରଖିଛନ । ଦେଖଲେ ଚିନହିଁ ପାରବୁ ଜେ । ହେଲେ ଆଏଜ ଚାଲ ଜିମାନ" – କହେସି ଅନାଦି ।

ଆମେ ସଭେ ଉଠ୍‌ସୁଁ, ମନୋହରପୁର ପଡିଆନୁ । ପୁରୁବ ଦିଗେ ଉଦୁଥିସି ବଇସାଖ ପୁନିର ଜନ । ମଠଖାଇ ଆଡୁ ସଭୁଥିସି କୁଲିହାମନକର ରଡି । ଡଁଗରେ ଲାଗିଥିସି ମାଁକଡ ବିହା । ଡଁଗରର ଉପରୁ ତଲକେ ଉତରି ଆସୁଥିସି ଜୁଏର ଗୁଟେ ଧାର । ରିଜଭ ପୁଲିସନୁ ବାଜସି ଘଣ୍ଟା , ଆଠ ବାଜିଥିସିନ ରାତିର । ଆମେ ଫିରସୁ ଜେ ଜାର ଘରକେ । ମୁଇଁ

ରହୁଥିସି ସାଲେପାଲିନେ । ସକାଲର ପଖାଲ ଅଛେ ଖାଇ ଦେମି ନ । ଅନାଦି ତାର ରେକସା ଧରି କରି ଜିବା ହାତିସାଲ ପଡା, ସେନେ ରହୁଛେ ସେ । ଗିରଧାରି ରହୁଛେ ସୁଦପଡାନେ, କାମ କରସି ଜଁଗଲ ବିଭାଗର ନରସରିନେ ।

ଗାଁ ରହିଗଲା କାହିଁ ଦୁରେ .. ..

*********

ଆଏଜ ସକାଲୁ ସକାଲୁ ଗାଁନୁ ଆସିଥିଲା କାଳିଆ ମିଶ୍ର । ତାର ପୁଓ ଏଭେ ପଢୁଛେ ପିଆର ହାଇସ୍କୁଲେ ନବମ ଶ୍ରେଣୀ । ହସଟେଲନେ ରହୁଛେ ବଲି ରଏବାର ହେଲେନ କାଲିଆ ଆଏସି ବଲାଗେଁର । ତାର ଦୁକାନ ଲାଗି, ଗାଁର ଜଗନ୍ନାଥ ଗୁଡିର ଲାଗି ଘିନି ନେସି ଛୋଟ ମୋଟ କେତେକ ଜିନିସ । କାଲିଆ ଜେଭେ ବି ଆଏସି ବଲାଗେଁର ମତେ ନିସଚେ ଭେଟସି ଆମର ମହାଜନର ଦୁକାନେ ।

କାଲିଆ କହୁଥିଲା ଗାନେ ସଭେ ବନେ ବନେ ଅଛନ । ଖାଲି ଅଁସେଇ ପଡି କରି ମରିଗଲା ଗଁତିଏନ ମୁଡ଼ି ଚାଏରଦିନ ତଲେ । କେତେ ଦିନୁ ପଡିଥିଲା ନାଇଁ ପଚରଉ ଥାଇ ପୁଓମନେ, ଫାବିଗଲା ବୁଢ଼ି । କାମ କାଜ କରବାର ଲାଗି ଗଁତିଆ ଘରେ ବିକି ଦେବେ ଦୁଇ ଏକଡ ଜମିନ । ସେଟାକେ ପରେ ଘିନବା କାଲିଆ ବାମହନ । ଉକିଲ ସାଁଗେ କଥା ହେଇଛେ, କହୁଥିଲା ହେ ଦିନ ମତେ ଟିକେ ଜିବାକେ ପଡବା ସାଖି ହେବାର ଲାଗି କଚରିକେ । ଦେଖ, କାଲିଆ ଆମର ଗାଁର ପରଜା ହେଇଗଲା ଦେଖୁନ ଦେଖୁନ । ମୋର ଏଭେ ବି ସୋର ପଡୁଛେ ଜେଭେ ସକାଲୁ ସକାଲୁ ଖଟଲିଟେ ନେ ଜଗନ୍ନାଥ ମାହାପୁରୁ କେ ଧରି କରି କାଲିଆ ଚାଲି ଚାଲି ଆଏଲା ଦେଗାଁନୁ । ତାର ଦୁଇଦିନ ଆଘୋ ବିଡିଓ ଗାଁ ମଝିନେ ସଭା କରି ପରେ କହିଥିଲେ –

"ତମେ ସମସ୍ତେ ଶୁଣ, ଚାରି ପାଞ୍ଚଦିନ ତଳେ ତମ ଗାଁକୁ ଯେଉଁ ରାମ କୃଷ୍ଣ ମିଶନର ସେବାଦଳ ଆସିଥିଲେ, ସେମାନେ ଜିଲ୍ଲାପାଳଙ୍କୁ ଗୋଟିଏ ପ୍ରସ୍ତାବ ଦେଇଛନ୍ତି । ତମ ଗାଁରେ ଭୋକ ଉପାସରେ ଅନେକ ଲୋକ ବଡ କଷ୍ଟରେ ଅଛନ୍ତି । ବିଶେଷ କରି ଶିଶୁ, ବୃଦ୍ଧ ଓ ନିରାଶ୍ରୟ ଲୋକମାନେ ଖାଇବାକୁ ପାଉ ନାହାନ୍ତି । ତାଙ୍କ ପାଇଁ ତମ ଗାଁରେ ଦିଆ ହେବ ରନ୍ଧାଖାଦ୍ୟ । ଆସନ୍ତା ଦଶହରା ମାସ ଯାଏ ପ୍ରତ୍ୟେକ ଦିନ ସକାଳ ଓଳି ଭାତ ଡାଲି କିମ୍ବା ଖିରି ରନ୍ଧା ହେଇ ଲୋକମାନଙ୍କୁ ବଣ୍ଟା ହେବ । ରାତିରେ ସେଇଟା ବ ରହିବ । କୋଉଠି ରନ୍ଧା ହେବ, କିଏ ରାନ୍ଧିବ ଏସବୁ ବିଷୟରେ ଆଜି ବ୍ୟବସ୍ଥା କରି ମୁଁ ଜିଲ୍ଲାପାଳଙ୍କୁ ରିପୋର୍ଟ ଦେଲେ, ଦୁଇଦିନ ପରେ ତାହା ଆରମ୍ଭ ହେବ । ଏବେ ତମେ ସବୁ କହ କଣ କରିବା ?"

"ହଜୁର ମାଁ ବାପ " ଗଁତିଆ ବୁଢ଼ା ପରେ କହେଲା – "ଇଟା ବଢ଼େଟେ କଥା

ହେବା ହଜୁର, କେତେ ଲୋକ ତ ବଁଚିଯିବେ । ହେଲେ,  ଆମର ଗାଁନେ ଅଛୁଁ କୁଲତା ଛଅ ଘର, ଦସ ଘର କଁଧ, ଗଁଡ଼ କେତେ ଘର, ଗଉର ଘରେ, କେଉଁଟ ଘରେ, ଚାଏର ଘର ଗଁଡା ଆର ମାହାତି ଘରେ । ଜେ ଛାଡ ତାଁକର କଥା, ସେମାନେ ତ ମହାଜନ ଲୋକ, ହେ ମନେ କାଣା ଖାଏବେ ଇ କାଁଗାଲିଖାନା ? ଆମର ଡେରା ଘରେ ତ ରାଧିଁ ଦେମା, ହେଲେ ରାଁଧିବା କିଏ, ଗଁଡମନେ ତ ନାଇଁ ଖାନ କାର ହାତର ରଁଧା, ଗଁଡମନେ ରାଁଧିଲେ ନାଇ ଖାନ କୁଲତାମନେ ଆଉ ଆର ପାଟକି ଜାଏତ । ଇ ଟା ଟିକେ ଖାଲି ଅସୁବିଧା ହେଲା ।”

“ହଇହୋ ଗଁଡତିଆ, ଯୁଗଯାଇ କୋଉଁଠି ପହଞ୍ଚିଲାଣି ତମର ଏଠି ଜାତିକଥା ପଡିଛି ” – କହିଲେ ବିଡିଓ ଆଜ୍ଞା । ଟିକେ ଭାବଲେ ଗୁମହେଇ ଫେର କହେଲେ – “ଆଚ୍ଛା ଶୁଣ ମୋର ଗୋଟିଏ ପ୍ରସ୍ତାବ ଅଛି । ଆମର ଡେରା ଘରେ ଛୋଟ ଜଗନ୍ନାଥ ମୂର୍ତ୍ତିଟିଏ ସ୍ଥାପନ ହେବ । ଯାହା ବି ରନ୍ଧାହେବ, ସେଠି ଭୋଗ ଲାଗିବ । ତାପରେ ତ ସେଇଟା ଜଗନ୍ନାଥ ଙ୍କ ପ୍ରସାଦ । ଯିଏ ଛୁଇଁଲେ କିଛି ନାଇଁ । ଯିଏ ଖାଇଲେ କିଛିନାଇଁ । ମୁଁ କଳାହାଣ୍ଡିରେ ଥିବାବେଳେ କେତେ ବଡ ବଡ ଗଣ୍ଡ ଜମିଦାରମାନଙ୍କଠୁ ଶୁଣିଛି ଜଗନ୍ନାଥ ହେଉଛନ୍ତି ନିଜେ ଜଙ୍ଗାଦେଓ, ବଳଭଦ୍ର ହେଉଛନ୍ତି ବୁଢ଼ାଦେଓ । ସୁଭଦ୍ରା ବି ସେମିତି । ମୁଁ କାଲି ଜଣେ, ଜଗନ୍ନାଥ ପୂଜକ ଓ ଜଗନ୍ନାଥ ମୂର୍ତ୍ତି ପଠେଇ ଦେଉଛି । ପରଦିନଠୁ ସେ ମ ିର  ପାଇଁ ପ୍ରସାଦ ବି ରାନ୍ଧିବେ ସମସ୍ତଙ୍କ ପାଇଁ ଖିରିବି ରାନ୍ଧିବେ । ତମମାନଙ୍କ ପାଇଁ କାମ ହେଲା କାଲି ଡେରା ଘରକୁ ଲିପାଲିପି କରି ପବିତ୍ର କରିବା । ସେଠି କେତେ କଣ କାମ ହେଇଛି ତମେମାନେ ତ ସବୁ ଜାଣିଛ ।”

ଆମେ ତିନଝନ ଝାରୁ ଆନିଥିଲୁଁ ଭାରେ ବାଗିର କୁରେଫୁଲ । ଡେରା ଘରକେ ଲିପି ପୁଛି ଦେଇଥିଲା ନରିହେନ ବୁଢ଼ । ଆମତରନ ବି ଦେଇଥିଲୁ ଗାଁ ର ସବୁପିଲା । ଗଁତିଆଘରୁ ଆନିଥିଲୁ ଘଁଟ, ଗାଁର କିରତନ ଦଲ ବି ବରି ଆନିଥିଲେ ଜଗନ୍ନାଥ ମାହାପୁରୁକେ । ପଛେ ଆମେ ସୁନିଛୁଁ କାଲିଆର ନୁ, ହେ ବିଡିଓ ପରେ ଥିଲେ କାଲିଆର ମାଉସିର ପୁଓ । ଚାକରି ପାଏମି ବଲି କଟକନୁ ଆସିକରି ବିଡିଓ ଘରେ ରହୁଥିଲା କାଲିଆ । ଇନେ ସେ ହେଇଗଲା ଜଗନ୍ନାଥ ମ ିରର  ପୁଝାରି । ପଛେ ଚାକିରି ବି ପାଏଲା ଜେ, ଆମର ପନଚେତର ପିଅନ ହେଲା କାଲିଆ ।

ଇ ଚଉଦ ବରସ, ସକାଲେ ସଁଜେ ଗାଁନେ ବାଜୁଛେ ଘଁଟ ସଁଖ । ହେଉଛେ କେତେ ନାଟ କିରତନ । ଆମର ଗାଁର ଡେରାଘର ହେଇଯାଇଛେ ଜଗନ୍ନାଥ ଗୁଡି । ତାର ପାଖେ କାଲିଆ ମିଶ୍ର ବନେଇଛେ ଛୋଟଟେ ଘର ସରକାର ଜମିନନେ, ଆମେ ତିନ୍ ଝନ ବରସେ ହେଲାନ ଗାଁ ଛାଡିକରି ରହୁଛୁଁ ବଲାଗିଁରେ । ହେଲେ ବେଲବୁଡଲେନ ମୋର ସୋର ପଡସି ଗିରଧାରି ଫୁକୁଛେ ସଁଖ, ଅନାଦି ଧରିଛେ ଗିନି, ମୁଇଁ ପିଟୁଛେ ଘଁଟ । କାଲିଆ ନଚେଇ

ନଚେଇ କରି ମାହାପୁରୁକେ ଦଉଛେ ଆଲତି । ଆଲତିର ପରେ ଆମର ସମକର ଉପରେ ଝିଟିଦଉଛେ ମୁଠେ ପାଏନ ।

*********

ହେ ଦିନ ଜୁଏ ଲାଗିଗଲା, କୁହୁଲୁଥିଲା କେତେ ଦିନୁ । ଜଲିଗଲା ଦଁ କରି କେତେ ଦିନର ରାଗ ରିସମି । ଲୋକ ଲୁଟିନେଲେ ଯାହା ପାଏଲେ । ଗୁଦାମ ଘରୁ ବୁହିନେଲେ ଟିନଟିନ ଘି, ତେଲ । ବସ୍ତାବସ୍ତା ମୁଗ, ବିରହି, ଗହମ, ଚଉଲ, ଜିରା ହଲଦି ଜାର ହାତେ ଜାହା ପଡଲା ବୁହି ନେଲେ । କେତେ ଦିନର ଭୋକ ଲୁକି କରିଥିଲା ମନ ଭିତରେ । କପଡା ଦୁକାନୁ ସାଢ଼ି ଧୁତି, ପେଁଟ ସାଟ୍, ଦରକାର ଥାଉ କି ନାଇଥାଉ ବୁହି ନେଲେ । ଜେନୁ ନାଇଁ ଆନିହେଲା ଲଗେଇଦେଲେ ଜୁଏ । ସମକୁ ଲାଗୁଥିଲା ମୋର ଭାଗ, ମୋର ନେବାର ଅଛେ । ଘଡି, ସାଏକଲ, ରେଡିଓ ସାରାଦିନ ବଲାଁଗିରେ ଲାଗଲା ବୁହାବୁହି । ସଭେ ଦେଖୁଥିଲେ, ପୁଲିସ ବି ଦେଖୁଥିଲା, ଧୁ ଧୁ ହେଇ ଜଲୁଥିଲା ଦୁକାନ, ହୁ ହୁ ହେଇ ଜଲୁଥିଲା ଲୋକ ମନକର ମନ ।

ମୁଇଁ ବି ଦେଖୁଥିଲି ମହାଜନର ଦୁକାନ ସାମନା ନେ ଠିଆ ହେଇ ସାରାଦିନ । ଜଲି ଜଉଥିଲା ଆମର ସହୁର ଦୁକାନ, ଜଲୁଥିଲା ପାଖର ଦୁକାନମନେ ବି । ଉପରୁ ଅସିନ ମାସର ଖରା । ପିଲାଛୁଆଁ, ବୁଢ଼ାବୁଢ଼ି, ସଭେ ଧାଇଁ ବୁଲୁଥିଲେ ବୁହିନେବାକେ । ଘରୁ ଆସୁଥିଲେ ଯାହା ପାଏଲେ ଦଉଡୁ ଥିଲେ ବୁହିକରି । ହେତକି ବେଲେ ଏକା ଆଏଲା ଅନାଦି ହାସପାତାଲ ଆଡୁ । କହେଲା – 'ତତେ ମୁଇଁ, ନୁରୁଥିଲି ମନେ ମନେ ବୋ ନିରାକାର । ଯେତେବେଲେ ସୁନଲି ତମର ମାହାଜନ ଘରର ଗୁଦାମ ନେ ଜୁଏ ଲାଗିଛେ, ମୁଇଁ ଡରୁଥିଲି ତୁଇ ଠିକ ଠାକ ଅଛୁ ତ ?'

ଖପ କରି ବସଲିଁ ଅନାଦିର ରେକସା ଉପରେ, କହେଲି – "ଚାଲ ଗାଁ କେ ପଲାମା ଚାଲ ।" ହାତ ଗୋଡ ବସି ଜଉଥିଲା । ରାଗେ ଥରଥରୁଥିଲା ଦିହି, ଦିନସାରା କିଛି ନାଇ ଖାଇ ରହିଥିଲି ଠିଆ ଠିଆ । ଅନାଦି ଟିକେ ଭାବଲା ଆର କହେଲା – "ନାଇ ନାଇଁ ତୁଇ ଆଏଜ ତୋର ସହୁ ଘରେ ରହ । କିଛି ନାଇଁ କର ପଛେ, କାହାକେ କିଛି ନାଇଁ କହ ପଛେ ତୋର ସହୁ ଜାନବା, ତୁଇ କିଛି ନାଇଁ ନେଇ କେନୁବି ।"

ହେତକି ବେଲେ ଆମେ ଦେଖଲୁଁ ଓଁକାର ଦାଦା ବେଁକ ନୁ ଉତରୁଥିଲେ ପାହେ ପାହେ । ମୁହୁଁ ସୁଖି ଜାଇଥିଲା, ମୁଡ ଗାଡି କରି ଚାଲିଚାଲି ଗଲେ କଚରି ଆଡକେ ସାଏକଲ ଠେଲିଠେଲି । ଅନାଦି ମତେ ଚିନହେଇ ଦେଲା । ଚଉଦ ବରସ ପରେ ଆର ଥରେ ଦେଖଲି ଓଁକାର ଦାଦାକେ । କିଛି ନାଇଁ ବଦଲି ଥାଇ ତାଁକର, ଖାଲି ବଦଲି ଥିଲୁ ଆମେ ।

କେତେ ଥର ମୁଇଁ ଭାବିଛେ ଭେଟମି କଚରି ଛକେ । ନାଇଁ ହେଲେ ଆମର ଇ ଦୁକାନ ପାଖର ବେଁକ ନେ । କହେମି ଉଧାର ଲାଗିଛ ଦାଦା, ମୋର ସେ ସରଗିଫୁଲର ପଏସା କେଭେ ଦେବ ? କହେମି ତମେ ହେଦିନ ଆମକୁ କାଣା ଦେଲ କେଜାନି ଆମର ଗାଁ ବଦଲି ଗଲା , ଆମେ ବି ବଦଲି ଗଲୁଁ । ହେଲେ କିଛି କହି ନାଇଁ ପାରେ କେଭେ, ଖାଲି ଦେଖସିଁ ଧୁରିଆନୁ ।

ଦୁଇ ବରସ ହେଲା ନ ଆମେ ତିନ ଝନ ବଲାଁଗିରେ ରହେବାର । ଘରର ଲୁକେ କହୁଛନ ବିହାଚୁରା ହ, ପିଲାଛୁଆ କେ ନେଇକରି ପଛେ ରହ ବଲାଁଗିରେ । ଗାଁ ନେ ଏଭେ ହେଲାନ ପାଁଚ ଶ୍ରେଣି ତକ ଇସକୁଲ । ମାଇନର ପଢ଼ବାର ଲାଗି ପାଁଚ ମାଇଲ ଆର ହାଇ ଇସକୁଲ ଲାଗି ଆଠ ମାଇଲ ଚାଲବ ଗାଁ ନେ ରହେଲେ । ପିଲାମନକୁ ପାଠ ପଢ଼ାବାର ଲାଗି ଆମକୁ ସହରେ ଏକା ରହେବାର କେ ପଡବା । ଗାଁ ନେ ହେଲେ ଆର କାଣା କାମ କବାର ଅଛେ, ଚାସକେ ଛାଡି ଦେଲେ । କିଛି ଠିକ କରି ନାଁଇ ପାରୁଥାଇ ଆମେ ତିନ ଝନ୍ ସାଁଗ ।

*********

ଗାଁନେ ହେବା ଅସଟ ପହରି ଆର ବିରାଟ ପରବ । ଗାଁ ର ସବୁ ସାଁଗ କହିଛନ ଆସବ ବୋ, ଜେନତା କଲେ ଆସବ ଗାଁ ର ଇ ତିହାର କେ । ଆମେ ସକାଲୁ ସକାଲୁ ଅନାଦିର ରେକସା ଧରିକରି ବାହାରି ପଡଲୁଁ ତିନ ଝନ । ଜେ ଜେତେବେଲେ ଚଲାଲେ ଆର ଦୁଇଝନ୍ ବସବେ । ବାଟେ ପଡଲ ଗୁଟେ ସରଗି ବୁରେଇ । ଗିରଧାରି କହେଲା ଜାନିଛ, ଇ ସରଗି ଗଛେ ଫୁଲ ଫୁଟସି, ଫଲ ହେସି, ହେଲେ ଫଲୁ ଗଛ ନାଇଁ ହୁଏ । ଅନାଦି ହସି ହସି ପଚାରାଲା "ତୁଇ କେନତା ଜାନଲୁ ଏତେ କଥା ?"

"ହଏବୋ ଆମର ଫରେସ୍ଟର ଆଗ୍ୟାଁ କହୁଥିଲେ, କେତେ ନରସରି ନେ କେତେ ଉପେ କଲେନ ସରକାର, ହେଲେ ଗଛ ନାଇଁ ହେବା ମଁଜିନୁ" – କହେସି ଗିରଧାରି ।

ଚଟ କରି ମୋର ସୋର ପଡସି ଓଁକାର ଦାଦାର କଥା । କହେଲି ଶୁନ କାଏଲ ଆମେ ଫିରି ଆଏମା ବେଲ ବୁଡ଼ାକେ । ବାଟୁ ଆମେ ଭାଁଗି ନେମା ଦୁରା ସରଗିଫୁଲ । ସିଧା ସିଧା ଜିମା ରୁଗଡିପଡ଼ା । ଓଁକାର ଦାଦାକେ କହେମା ଆମେ ସେ ଦିନର ତିନ ଝନ୍ ପିଲା, ଆମେ ସେ ଦିନର ତିନ ଝନ୍ ଚୋର । ତମେ ହେ ଦିନ କହେଲା ପରେ ଆର ଆମେ ଚୁରି ନାଇଁ କରି କେଭେ ବି । ତମର ସହରର ଲୋକ ପଛେ ବୁହି ନେଲେ ଯେନୁ ପାଏଲେ, ଜାରନୁ ପାଏଲେ ଜାହା ।

ଗିରଧାରି କହେଲା – "କେନେ ଆମକୁ ଚିନଭେ ବୋ ? କେଭର କଥା, କେତେ କଥା ବଦଲି ଗଲାନ ଏଭେ । କେନ ଗୁଟେ ଜୁନହା କଥା ନେଇକରି ଭେଟବୁ ଏଡ଼େ ବଡ ଲୋକ କେ ।"

"ଦେଖ୍ ଗିରଧାରି ତମେ ଜ କି ନାଇଁ ଜ ମୁଇଁ ତ କାଲ କେ ଜିମି ନିସଚେ । ସାଁଗେ ନେଇଥିସି ଦୁରା ସରଗିଫୁଲ । ଇଟା ଦେଖଲେ ମତେ ସୋର ପକାବେ ଜେ । ସରଗିଫୁଲ ଗୁନ କାଣା ଜାନିଛୁ ଇଟା ସୁଖି ଜାଏସି, ଝଡି ନାଇଁ ଜାଏ, ରହେସି ଦିନଦିନ ତକ ।" ଇଟା କହେଲା ବେଲକେ ମୁଇଁ କେନତା ଉଧୁଁ ଗୁଁପୁ ହେଇ ପାଏସି କାଣା କହେମି କାଣା କହେମି ହେଇକରି ଫେର ଘାଏ କହେସି- "ମତେ କେନତା ଜେ ଲାଗସି ଇ ସରଗିଫୁଲର ନାଁ ସରଗର ଫୁଲ ହେବାର କଥା । ମତେ ଲାଗସି ଓଁକାର ଦାଦାର ସାଁଗେ ଇ ସରଗିଫୁଲ କାଣା ଗୁଟେ ଭାବ ଅଛେ ।

ଦେଖୁନ ଦେଖୁନ ଆମେ ପୁହୁଁଚି ଗଲୁ ଗାଁ ନେ । ଜଗନ୍ନାଥ ଗୁଡି ନେ ଅସଟ ପହରି ଆରହମ ହେଇଥିଲା ନ । ମଡୋ ସାଲେ ବସିଥିଲା ବିରାଟ ପରବ । ଭୁଜି ଭାତ, ଧାଁ ଧଉଡ, କିରତନ ଦଲ ଆର ଘରେ କୁନୁଆଁର ଭିଡ ଭିତରେ ଘାଏ ଘାଏ ସୋର ପଡୁଥିସି ସେ ସୁଲହ ବରସ ତଲର କଥା । ଫୁଁଗଲା ଦିହି, ପଛ ଆଡେ ଗୁଟେ ଗୁଟେ ବୁଚକା । ମାଏଝି ମନେ ବିରାଟ ପରବ ସୁନୁଥିଲେ । କିଏ ଝନେ କହେଲା – "ଏ ପିଲେ ରହ ।" କଅଁଲି ଗାଲେ ପଡଲା ଚଡାଲ ଚଡାଲ ଚଟକନ । ଆମେ ଚୁରେଇ ଥିଲୁଁ କେତେ ଅଡା ଧାନ, ଭୁଜା ଖାଏମୁଁ ବଲିକରି ହେ ଭୁଖର ଦୁଖର କାଲେ ।

ଗାଁ ବଢ଼ିଛେ କି ଛିଡିଛେ ? ଦଲ ଦଲ ହେଇ ଗାଁ ନୁ ଲୋକ ଜାଇଛନ ପାଖର ସହର ବଲାଁଗିର କେ କି ଧୁରର ସହର ରାଏପୁରକେ । ଗାଁ ନେ ନାଇଁ କରି ହୁଏ ଜେନ କାମ, ହେଟା କରି ହେବା କିହେ ନାଇଁ ଦେଖୁଥିବାର ନୁଆଁ ସହରେ । ଗଁତିଆ ଘରର ସୁରୁବାବୁ ପରେ ରାଏପୁରର ଗୁଟେ ହଟୁଲ ନେ ଧୁଇସି କପ ପିଲେଟ, – ଲୋକ କହେସନ । ଲୋକ କହେସନ – "କେତେ ସତ କେତେ ମିଛ କେ ଜାନେ, ପଧାନ ଘରର ବଡପିଲା ଚଲାସି ରେକସା ରାଏପୁରେ ।"

ହେ ଥର ଜେନ କଁଗାଲିଖାନା ବାଁଟଲା ସରକାର ମାହାପୁରୁର ପରସାଦ ବଲି ଆମେ ଖାଏଲୁଁ ପିଲାବେଲେ, ତାହେଁରୁ ଜେନ ମକାଁ ଗୁଡ ଆର ଗହମ ଦଲିଆ ଦେଲା ଆମେରିକା ସରକାର, ଖାଏଲେ ଆମର ଇସକୁଲିଆ ପିଲେ, ହେଥି କାଣା ମିସିଥିଲା ନିସା ? ଲୁଟି ଖାଏବାର, ମାଗି ଖାଏବାର ଆମର ବଏସରା ହେଇଗଲା ହେ ଦିନୁ ? କାମ କରବାର ଆମେ ଭୁଲି ଗଲୁଁ, ଦେଖି ନାଇଁ ପାରଲୁଁ ? – ର, ଇଟା ବି ପଚରାମି ଓଁକାର ଦାଦାକେ ।

ସାରା ରାଏତ ହରେ ରାମ ହରେ କୃଷ୍ଣ, ସକାଲ ହେଲାକେ ପୁରନାହୁତି । ନଗର କିରତନେ ଆମେ ନାଚଲୁଁ ତିନ ଝନ, ମଖା ମୁଖି ହେଲୁଁ ହଲଦି । ଭାଁଗି ଗଲା ଦଧିହାଁଡିର ଖପରାନେ ରାପିଁ ଆନଲୁ ଗାଁର ମାଏଟ, ଲେପା ଲେପି ହେଲୁଁ । ଭୁଜିଭାତ ଖାଇ କରି ଫିରଲା ବେଲକେ ପାଏନ ବୁହାତି ବେଲା ।

ବାଟେ ପଡଲା ସେ ସରଗି ବୁରେଇ । ମୁଇଁ ଭାଁଗଲି କେତେ କେଁଡା ସରଗିଫୁଲ । ବେଲ ବୁଡି ବୁଡି ଆସୁଥିଲା । ହାଲିଆ ବି ଲାଗୁଥାଏ ସମକୁ । ଗିରଧାରି କହେଲା – "ମତେ ଛାଡିଦେବ ମାଲପଡା ନେ, ମୁଇଁ ଚାଲି ଚାଲି ପଲାମି ନ ମୋର ବସାକେ ।"

ଅନାଦି କହେଲା – "ଦେଖ ତତେ ମୁଇଁ ଛାଡିଦେମି ଭାଗରଥି ଛକେ, ମୁଇଁ ଆର ନାଇଁ ଜାଇ ପାରେଁ ନ ଆର କାର ଘର କେ ।"

ହେନତା ଏକା ହେଲା । ଭାଗରଥି ଛକୁ ମୁଇଁ ସାଲେପାଲି ଗଲା ବେଲକେ ପଡଲା ଓଁକାର ଆଗ୍ୟାଁର ଘର । ଘରର ଆଘେ କାଣା ଏତେ ଲୋକ ସମକର ମୁହୁଁ ଥନ ଥନ ? ବାହାରେ ଧୋବ ନୁଆଁ କପଡାନେ ସୁଇଛେ, ଇଟା କିଏ ? କିଏ ଇଟା, ଫୁଲମାଲେ ଢ଼ାପି ହେଇଥିଲା ଅଧା ମୁହୁଁ, ପୁରା ଦିହେ ଢ଼ାପି ହେଇଥିଲା ନୁଆଁ କପଡ଼ା । ଆର ଆର ପାଖକେ ଗଲିଁ । ହେ ଭଗବାନ ! ଇଟା ଓଁକାର ଦାଦା ?

ଲଥ କରି ବସି ପଡଲିଁ, ହାତର ସରଗିଫୁଲ ପଡି ରହେଲା ତାଁକର ଗୋଡ ପାଖେ ।



# ଢୁକୁଘରା ଆର୍ କେତେ ଖଁଡ କାଠ୍

ନେତ୍ରାର ଆଏଁଖ ଦୁଇଟା ଥିଲା ଖାଲି ଦେଖବାର ଲାଗି ନାଇଁ ସେ, ଜଗତକେ ସଜାବାର ଲାଗି । ଇ ଢ଼ମାଢ଼ମା ଆଏଁଖ ନାଇଁଥିଲେ, ଇ ଜଗତ୍ ହେନତା ବୁନିହେଇ ପଡିଥିବା ତାରତାର । କେନ୍‌ତା କରି ବୁଝିହେଇଥିବା ଏତ୍‌କି ସୁଁଦର ର ଜଗତ୍, ଇ କୁଟାକାଠି, ଇ ଝାର ଜଁଗଲର ମଲାଚେର, କୁହା ଖୁଁଟ, କେଁଗଟୋ ବାଁଗଟୋ ମଦାଁଗ୍ । ଇ ଭିତରେ ଏତକି କଥା ଅଛେ ଜାନିଥିତା କିଏ ?

ସମିଆ ଖଉଛେ ଆମକୁ, ଇ ମାଏଟ୍, ଇ ପାହାଡ, ଇ ଗଛ ପତର ସମକୁ । କେରକେଡି କେରକେଡି ଖଉଛେ ସମିଆ ବଲି ଜଗତ ବଦଲୁଛେ । ନୁଆଁ ନୁଆଁ ରୁପ, ନୁଆଁ ନୁଆଁ ନାଁ, ଇ ଜଗତ୍ କେ ଆସୁଛେ । ତାହାକେ ଚିନବାର ଲାଗି ଜରୁରତ୍ ଗୁଟେ ଆଏଁଖ । ନେତ୍ରା ବି ନାଇଁ ଜାନିଥାଇ ତାର ଏନତା ଆଏଁଖ ଗୁଟେ ଅଛେ । ଦୁଇଟା ନାଇଁସେ ତିନଟା, ଦୁଇଥିର ମଝି ଆରଗୁଟେ । ନେତ୍ରାନ   ନାଁ ଦେଲା ବେଲକେ ତାର ମା ବୁଆ କିଏ ଇ ଆଏଁଖ୍ କେ ଦେଖି ଦେଇଥିଲା କାଏଁ ?

ନେତ୍ରା ଜେନ ଦିନ ଜାନଲା, ତାହାକେ ହେଇଥିଲାନ ଚାଲିସ କି ପଏଁଚାଲିସ ବଛର । ମଠଖାଇନୁ ନୁରି ନୁରି ଠୁଲେଇ ଥିଲାନ କେତନି କେତେ କାଠ ଖୁଁଟ, ମଲା ଚେର ସୁଖା ମଦାଁଗ । ସମିଆଁ ପାଏଲେନ ତାହାକେ ସଜଉଥିଲା । ସାନସାନ କରତ, କେତେ ରକମର ଲୁହାକଁଟା, ଭିନେ ଭିନେ ରଁଗ, ଅଠା ଆନିକରି ଇଟାମାନକୁଁ ଭାଁଗୁଥିଲା ଆର ଜୁରୁଥିଲା, ପାଲିସ କରୁଥିଲା, ଖଦଖଦରିଆ ବି କରୁଥିଲା । କାଠର ପିଁଢ଼ା ନେ ବସଉଥିଲା

ମାହାପୁରୁ ଲେଖେନ । ମଝିନେ ରଖିକରି କିଁଦରି କିଁଦରି ଦେଖୁଥିଲା । ଜଦି ଫୁରସତ ହେଲେ ଦିନର ବେଲେ, ନାଇଁ ହେଲେ ରାତି, କେଭେ କେଭେ ସାରା ରାଏତ ଲାଗିଥିଲା ଇ ଜୁରାଜୁରି ।

ହେଲେ ନେତ୍ରା ନାଇଁ ଜାନି କାଏଁକରି ଇଟା କରୁଛେ । ନାଇଁ ଜାନି କାଣା କରବା ଇଟାକେ । ନେତ୍ରା ଘରର, ଆରୁଆରୁ କାମ ଛାଡି ଦେଇ ଥିଲାନ, ସାଁଗସାଥି ଛାଡି ଦେଇଥିଲା ନ, ଆକାଶବାଣିର ଗିତ ଲେଖା ବି ଛାଡି ଦେଇଥିଲା ନ । ଜଉଥିଲା ଝାରକେ, ନୁରୁଥିଲା ମଲା କୁହା ଭଁଗା କାଠଖୁଁଟ । ଦେଖିଲେନ ଜାନି ଜଉଥିଲା ନେତ୍ରା କାହାକେ କାର ସାଁଗେ ଜୁରିହେବା । ଦୁଇ ବଖରା ଘର, ବାଏର ଫାଲର ପିଁଢ଼ା, କିଏ କେନେ ପଡିଛନ କେତେ ରୁପେ ନେତ୍ରାର ସବୁ ସୋରଥିସି । କାର ସାଁଗେ ଜୁରି ହେବେ ବଲି କିଏ ଟାକିଥିସନ ବଛର ବଛର । ଏନତା ବି କାଠ ଅଛନ ଗୁଟେ ରୁପ ଧରିକରି ଝାରେ ପଡିଥିସନ, ମତେ ନୁର ବଲିକରି ଜୁହିଥିସନ ଝାରେ, ଦେଖଲେନ ହଁସି ଦେସନ ଫିକ୍‌କରି ।

ନେତ୍ରା ତାହାକୁ ଦେଖଲେନ ଧୁଇ ଦେସି, ପୁଛି ଦେସି କଁଟା ପିଟିଦେସି, ରଁଗ ମଖେଇ ଦେସି, ବସେଇ ଦେସି କାଠର ପିଁଢ଼ାନେ । ଇସକୁଲର ପିଲାବାଗିର ଧାଡି ବାଁଧିଛନ ଏନତା କେତେଜେ କାଠ । ଇଟା କେଭେ ଆରହମ ହେଲା ନେତ୍ରା ନାଇଁ ଜାନି । ନେତ୍ରା ଯେନଦିନ ଜାନଲା ତାହାକେ ହେଇଥିଲାନ ଚାଲିସ ପଏଁଚାଲିସ ବଛର ।

"ନେତ୍ରାନ ତମର ଗୋଟିଏ Creative Vision ଅଛି, ଗୋଟିଏ ଶିଳ୍ପୀର ଆଖି ।" ଚମକି ପଡଲା ନେତ୍ରା । ସତେ ତ, ଇ ଆଏଁକ ତାହା କେ ସୁଇନାଇ ଦେଇଥାଏ ସାରା ରାଏତ୍ । ଇ ଆଏଁଖି ତାହାକେ ନରଧଉଥିଲା । ଝାର ଝାର ପତରା ପତରା, ମଠଖାଇ ଚଘଉଥିଲା ରାତି ବିକାଲି, ଦିନଦିନ ରାଏତ ରାଏତ ଘରେ ଖୁଟ ଖାଟ ଲାଗିଥିଲା । ସବୁ ଇ ଆଁଖିର ଲାଗି ।

ନେତ୍ରା କହେଲା – "ହଏ, ଆଁଗ୍ୟା ହଏ, ମୋର ଆଏଁଖଟେ ଅଛେ, ମତେ ଦିସି ଜଉଛେ ସବୁ ଝଲଝଲ ।"

ପହେଲା ପହେଲା ଆଏଲେ ସିଲ୍‌ପି,କଲାକାର, ସାହିତିକ, ତାହେଁରୁ ତାହେଁରୁ ଅମଲା ଅଫିସର, ନେତା । ନେତ୍ରାର ଆର ସମିଆଁ ନାଇଁ ଅଁଟଲା । ଚାହା ଭୁଜା, କଫି ବିସକୁଟ, କାଜୁ ସବୁ ରଖବାକେ ପଡଲା । ରଖବାକେ ପଡଲା ଚଉକି, ସୋଫା, ଫୋନ । ରଖବାକେ ପଡଲା ବାରଲାଇଟ, ଫ୍ଲଡଲାଇଟ, ସ୍ପଟ ଲାଇଟ୍, ଠିକ ସେ ଦେଖାବାର ଲାଗି । ମାଗି ଆନବାକେ ପଡଲା ଫୁଲଦାନି ସୁଁଦର ସୁଁଦର କାଚ ଗିଲାସ । ରାତି ବିକାଲି କିଏ କେତେବେଲେ ପୁହୁଁଚି ଯିବା, ସବୁବେଲେ ଘରକେ ରଖବାକେ ପଡଲା ପରଛା, ମୁହୁଁକେ

ଗହଗହ । ଆଏଁଖିଥି ଲଗାବାକେ ପଡଲା ଚସମା, ଟୁଡେଁ ହଁସି । ସଭେ ଆସବେ, ସଭେ ଦେଖବେ ବଲି ।

ଦିନେ ଭୁବନେସରୁ ଆଏଲେ ଗୁଟେ ନୁଆଁ ସାହେବ ।

ପଛେ ନେତ୍ରା ଜାନଲା ଇ ସାହେବର ବି ଗୁଟେ ଆଏଁଖ ଅଛେ, ଦେଖି ପାରବାର, ଚିନହି ପାରବାର. ଦାମ୍ ଜାନି ପାରବାର । ସବୁ ଦେଖଲା ଉତରୁ ନେତ୍ରାକେ ସାହେବ କହେଲା, "ନେତ୍ରାନ ବାବୁ, ଆପଣ ଜାଣି ପାରୁନାହାନ୍ତି, କଣ କରୁଛନ୍ତି ଆପଣ, ସାରା ଜଗତକୁ ଚମକେଇ ଦେବ ଆପଣଙ୍କର ଏଇ କଳାକୃତି ସବୁ । ଆପଣଙ୍କୁ ଦିଲ୍ଲି ଯିବାକୁ ହେବ ।"

ନେତ୍ରା ଟୁଡୁଁ ବାହାରି ପଡଲା "ଦିଲ୍ଲି" । ତୁମ୍ ପଡଲା ନେତ୍ରା, ଭାବଲା ଟିକେ । କହେଲା ଜିମା ଆଗ୍ୟାଁ, ଜିମା ହେଲେ ବିକା ବିକି ନାଇଁ କରୁଁ । ଲୋକ ଦେଖବେ ତ ଦେଖୁନ । ଫଟୁ ଉଠାବେ ତ ଉଠଉନ୍ । ଲୋକ ଜାନୁନ୍ ଆମର ଇନେ କାଣା କାଣା ଅଛେ । ଆମର ଇନେ ଭୋକ୍ ମରଡି, ପିଲାବିକରି ଖାଲି ନାଇଁନ, ଅଛେ ଜଗତକେ ଚମକେଇ ଦେଲାବାଗିର କାଠ୍‌ଖୁଁଟ୍, ଖାଲି ଚିନହିଁ ପାରଲେ ହେଲା । ହେଲେ ଜିମା କେନତା କରି । କେନତା କରି ନେମା ଇ ସମକୁ ।

ନେବାର ଅସୁବିଧା ନାଇଁ ହେଇ । ବଲାଁଗିରୁ ଭୁବନେସର, ଭୁବନେସରୁ ଦିଲ୍ଲି ସବୁ ଠିକ ଠାକ୍ ଗଲେ, ସବୁ ଠିକ୍ ଠାକ୍ ହେଲା । ଖବର କାଗଜନେ ବାହାରିଲା ଫଟୁ ଆର ନାଁ । ଦିଲ୍ଲିର ପ୍ରଗତି ମଏଦାନର ଝକମକ୍ ଉକିଆନେ ମଠଖାଇ ଡଁଗରର ଇ କାଠଖୁଁଟ୍ ବି ଦେଖଲେ ଦେସ ବିଦେସର ହଜାର ହଜାର ଲୋକକୁ । କେତେ ଭାସାନେ କଥା ହଉଛନ, କେତେ ଅରଥ କରୁଛନ୍ ସେମନକୁ । ଖଁଡେ ଖଁଡେ କାଠର ତୋଲମୋଲ କରୁଛନ୍ ହଜାର ହଜାର ଟଁକା ।

ନେତ୍ରା ଫିରି ଆଏଲା ଦିଲ୍ଲିନୁ ଏକଲା । ସାଟିଫିକଟ ଆନିଥିଲା, କେତେଲୋକର ଠିକନା ଆନିଥିଲା, ଫୋନ ନମର ଆନିଥିଲା, ଦୁରା ଫଟୁ, ଦୁରା ଖବର କାଗଜର କଟାଖଁଡ଼ ଆନିଥିଲା କେତେ ରକମର ସୋରସୁରତା ଆନିଥିଲା ।

ଯେନତା –"କୁତବମିନାରର୍ ଲୁହା ଖମାକେ ଉଲଟିଆ ଅଁଘାକରି ଧରଲେ ଲାଗସି, କାହିଁ କେତେଜୁଗର ଭାରତର ଇତିହାସକେ ଧରିଛେଁ, ସମିଆଁକେ ଧରିଛେଁ, ମୋର ସବୁ ସପନକେ ଧରିଛେଁ । ଏଛେନ ପାଇଛେଁ ଜିବନର ସବୁକିଛି ହଁ .......... ।"

ଯେନତା – "ଦିଲ୍ଲିର ସବୁ ଆଡେ ଲୋକ, ଲୁକର ମଝିଥିବ, ଲାଗୁଥିବା ସଭେ ତମକୁ ଦେଖୁଛନ, ନିଘା କରୁଛନ । ଘାଏ ଘାଏ ତ ଲାଗସି ତମକୁ କିଏ ଡାକୁଛେ, ପୁରା ନାଁ ଧରିକରି, ନେତ୍ରା ନେତ୍ରା । ମୁଇଁ ତ ଥରେ ପଛକେ ଉଲଟିକରି ଠଁକାଲି ଅକାବକା...... ।"

ଆର କେତେକେତେ କଥା, ଆର କେତେ କେତେ ଜିନିସ ଆନିଥିଲା ନେତ୍ରା ।

ହେଲେ ହେମନକୁ ନାଇଁ ଆନି ବଲି ନେତ୍ରାକେ ଲାଗୁଥିଲା, ଏକଲା ଏକଲା ।

ବାଟ ସାରା ନେତ୍ରାର ମନଦୁଖ ଦେଖିକରି ଭୁବନେସରର ସାହେବ କହେଲା: "ତମେ ଏମିତି ବ୍ୟସ୍ତ ହୁଅନି ନେତ୍ରାନ , Do not worry ସେ ସବୁ ଠିକ ଫେରିବ । ତମେ ଯଦି ଆମ ଏଠି ଅପେକ୍ଷା କରିବ କର । ହେଲେ ମୁଁ ତୁମକୁ ଠିକ୍ କହି ପାରୁନି କେବେ ସେସବୁ ଆସିବ । ଏମିତି ମାସେ ବି ଲାଗି ଯାଇପାରେ । ଶୁଣ ମୋର ଗୋଟିଏ ପ୍ଲାନ ଅଛି । ଯଦି ଆମେ ଭୁବନେଶ୍ୱରରେ ବି ଗୋଟିଏ ଏକ୍‌ଜିବିସନ୍ କରନ୍ତେ, କେମିତି ହୁଅନ୍ତା ! ତମ ଇଚ୍ଛା, ଏଠାକାର ଲୋକ ବି ଦେଖନ୍ତୁ ଆମର ଏଇ କଳାକୃତିକୁ ।"

ନେତ୍ରା ହସିଦେଲା, କହେଲା: " ହଏ ଆଗୁଁୟା ଲୋକ ପହେଲା ଦେଖୁନ ତ । କଳାକୃତି ସବୁ କାଣାକି, ସଭେ ଦେଖବାର ଲାଗିତ ।"

********

ନେତ୍ରାକେ ଲାଗୁଥିଲା ଭୁବନେସର ଗୁଟେ ଢୁକୁ ଘରା । ଇ ଥାକ ଥାକ ଘର, ଘରେ ସଲ ବଲ ସଲ ବଲ ଢୁକୁ । ଏତକି ଟିକେ ଟିକେ ଜିବନ ହେଲେ ପେଟେ କାହିଁନି କେତେ ଭୋକ ? ସବୁ ଖାଇ ଦେବେ, ଆଖେ ପାଖେ ଯାହା ମିଲବା ଚରିଦେବେ ସବୁ । କାଗଜ, ପତର, କାଠଖୁଁଟ, ସୁଖ ସପନ, ଆଏଜ, କାଏଲ, ସବୁ ସମକର ଚରି ଦେବେ ଇ ଢୁକୁମନେ ।

ବେଲ ବୁଡିବୁଡି ଆଉଥାଏ, କାହିଁ କେନ୍‌ତା ଜଲୁଥାଏ ଗୁଟେ ଗୁଟେ ଲାଇଟ. ବଲାଁଗିରକେ ବସ ଅଛେ କାହିଁ ରାତିର ନ'ବଜେ । ଗାଡି ମଟରେ ଲୋକ ଧାଉଁଥାନ୍ ଜେ ଜାର ଘରେ । କିହେ ଥେବବାର ନାଇଁ ଧାଉଁଛନ୍ ଜେ ଧାଉଁଛନ୍ । କିହେ ଦେଖବାର ନାଇଁ କାର ଆଡେ ଧାଉଁଛନ୍, କିଏ ସୁନବାର ନାଇଁ କାରକଥା, ଧାଉଁଛନ ଧାଡି ବାଁଧିକରି, ଜାଏସନ ଜେନ୍‌ତା ଭେଲାଭେଲା ଢୁକୁ ।

ନେତ୍ରା ଏଜି ଛକନୁ ଗଲା ଜୁନହାଁ ବସଟେସନ । ଆଗତୁରା ଟିକଟ୍ କଲା, ଠିଆ ହେଲା, ଚାହା ପିଇଲା । ଇଁଦରା ଗାଁଧି ପାରକ ଆଡ଼େ ମୁଁହାଲା ନେତ୍ରା, ଚାଲଲା ପାହେପାହେ । ସକାଲୁ ନାଇଁ ଗାଧି, ରାଏତ ସାରା ଉସନିଦରା । ସାରା ଦିନ ବୁଲିଛେ ଇନୁ ସେନକେ, ହାତଗୋଡ ଆର ତାର ବୋଲ ନାଇଁ ମାନବାର । ନେତ୍ରା ପାରକ ଭିତରେ ବସି ପଡଲା ଘାଁସ ଉପରେ । ଧାଡି ଧାଡି ଫୁଲଗଛ, ମୁଠେ ବହଲ ଘାଁସ, ସବୁ ସଫା ସୁତରା, କୁଟାକାଠି କିଛିନାଇଁ । ଝନେ ଘାଁସ କାଟୁଛେ, ଝନେ ଝିଁଟୁଛେ ପାଏନ, ନେତ୍ରା ନିଘାକରି ଦେଖୁଥାଏ ।

ଚମକି କରି ଠିଆ ହେଲା ନେତ୍ରା । ଭୁଜନି ହାତେ ଝାରିଦେଲା ପେଁଟ୍ । ମୁଡି ହେଇକରି ଦେଖଲା ପଛକେ । ନାଇଁତ ଠିକ୍ ଅଛେ । ଠିକ୍ ଅଛେ ତାର ପେଁଟ୍ । ଢୁକୁ ନାଇଁ ଚରିଦେଇ ।

ଅଁଫିସନେ ପିଅନ ଜେନ କହେଲା, "ଭୁବନେଶ୍ୱର ର ଯୋଉ ଉଇ, ବସିଥିବ ଉଠିଲା ବେଳକୁ ଦେଖିବ, ତୁମର ପେଣ୍ଟ ନ ଥିବ, ତୁମ ପିଚାରୁ ବି ଖଣ୍ଡେ ଖାଇଦେଇଥିବେ ଉଇ ।" ନାଇଁ ନାଇଁ ମିଛ କଥା ।

ନେତ୍ରା ଟିକେ ଆଘକେ ଗଲା ସିମେଟ ବେଁଚନେ ବସଲା ।

ଇ ଅଫିସ ସେ ଅଫିସ, ଇ ଟେବୁଲ ସେ ଟେବୁଲ, ସାରା ଦିନ ବୁଲିଛେ ନେତ୍ରା । ବଦଲି ଗଲାନ ଆଘର ସାହେବ, ଇନୁ ଉଠିଗଲାନ ସେ ଅଫିସ, ର ର ଫାଇଲ ନାଇଁ ମିଲବାର, ଆର ଅଫିସନେ ଦେଖ । ନେତ୍ରା କିଁଦରିଛେ ସାରା ଭୁବନେସର ସକାଲୁ ସଁଜ ।

ସେସେ ଝନେ ସାହେବ କହେଲା, "ହେଇ ଆପଣଙ୍କର ମାଳ ଅଂଚଳ, ସେଠି କାଠିକୁଟାର କୋଉ ଅଭାବ ? ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ଏଠି ଫାଇଲ ଖୋଜିବାଠୁ ଭଲ ସେଠି ବଣ ଜଙ୍ଗଲରେ ଆପଣ ଖୋଜିଦେଲେ ଆଉ କେତେକଣ ପାଇଯିବେ । ବୁଝନ୍ତୁ, ବି ପୋଜିଟିଭ । କାହିଁକି ଏଠି ହଇରାଣ ହରକତ ହେବେ, ମୋ କଥା ମାନନ୍ତୁ । ଗାଁକୁ ଫେରି ଯାଆନ୍ତୁ, କାଠ କେତେ ଖଣ୍ଡ ପାଇଁ ଏଠି କେତେ ବୁଲିବେ ।"

ନେତ୍ରା କିଛି କହି ନାଇଁ ପାରି । ପାଁଚ ମହଲା ଘର । ଧାଡି ଧାଡି ବଖରା ବଖରା । ସବୁ ଆଡେ ଉସୁମ, ଆରାମ । କେନ ହଜି ଗଲେ ଇନେ, ତାର କେତେ ଖଁଡ କାଠ ? ସାତ ବଛର ହେଲା ନରଧୁଛେ ନେତ୍ରା । ପହେଲା ସୁନୁଥିଲା ଦିଲ୍ଲି ଅଫିସନୁ ନାଇଁ ଫିରବାର । ଫିରଲେ ଇନେ ହେବା ଗୁଟେ ବଡ ପଦରସନି, ତମକୁ ଚିଠି ଜିବା ଜେ । ତାହେଁରୁ ସୁନଲା, ସବୁ ଠିକ ଫିରଲାନ ଠିକଠାକ, ପଦରସନିର ଦିନ ଠିକ ନାଇଁ ହେଇ ପାରୁଛେ, ଠିକ ହେଲେ ତମକୁ ଡକାଯିବା ର । ତାହେରୁ ସୁନଲା ପଦରସନି ହେବା ଯେ, କିଏ ଉଦଘାଟନ କରବା ଠିକ ନାଇଁ ହେବାର, ର ତମକୁ ଡକା ଜିବାଜେ । ତାହେରୁଁ – ର ଟାକ ଟାକ, ନୁଆଁ ଅଫିସର ଆସୁଛନ, ର ଟାକ ଟାକ, ନୁଆ ସରକାର ହେବା, ର ଟାକଟାକ ନୁଆ ଅଫିସ ଘରେ ହେବା ପଦରସନି, ର ଟାକ ଟାକ, ସାହେବର ମନ ଭଲ ନାଇଁନ ର ଟାକ ଟାକ ସାହେବର ଝି ବିହାଘର ବଡ କି ତମର ଇ ପଦରସନି ?

ନେତ୍ରା ଭୁବନେସର ଆଇଛେ ସାତ ବଛରେ ସତର ଥର ।

ଏନତା ଏନତା କେତେ କଥା ସୁନିଛେ । କେତେ ସପନ ଦେଖିଛେ, ହେଲେ କେଭେ ନାଇଁ ଦେଖି କାହିଁ ଗଲେ ତାର ସହେ ଛଟା କଳାକୃତି । ଇ ସାହେବ କହେଲେ, ସେ ସାହେବ କହେଲା କଥାକେ ଧରି କରି ଫିରିଛେ ଗାଁକେ ।

ହେଲେ ଆଝିର, କଥା ଭିନେ ।

ତାହାକେ ତ ବାଁତି ବାଁତି ଲାଗିଗଲା, ମୁଡ ଚକରେଇ ଗଲା ଯେତେବେଲେ ସୁନଲା, "ନେତ୍ରାନ   ବାବୁ, ଆପଣ କଲାକାର ଲୋକ, ଆପଣଙ୍କୁ ହଇରାଣ କରିବା ଆଦୌ ଉଚିତ ହେବ ନାହିଁ । ସତ କହିଲେ ଆପଣଙ୍କ ସେଇ କାଠସବୁ ଆମ ଅଫିସର ଷ୍ଟୋର ଘରେ ଥିଲା । ଏମିତି କେତେ ଦିନ ରହିବ ଆଜ୍ଞା ? ଆପଣ ତ କେବେ ବି କଣ କରାହେବ ଲେଖିକି ଦେଇଲେନି । ସେମିତି ଷ୍ଟୋର ଘରେ ପଡିପଡି ସାତବର୍ଷ, ବୁଝୁଛନ୍ତି ନା ସାତବର୍ଷ ସେମିତି ପଡିରହିଲା । କାଠ ଜିନିଷ ଆଜ୍ଞା, ତାର ବା ଜୀବନ କେତେ, ଉଇ ଖାଇ ଯାଇଥିବ, ଘୁଣ ଲାଗିଯାଇଥିବ । ସତରେ କଣ ହୋଇଛି ସଠିକ କିଛି କହି ହେଉନି । ସେ ଫାଇଲ ତ ମିଳୁନି ଆଜ୍ଞା । ଏଠି ପରା ଆଜ୍ଞା ଫାଇଲ ହଜିଯାଉଛି । ସେଇ କାଠ କେତେ ଖଣ୍ଡ କୋଉ ଜିନିଷ ? ହେଇ ମୁଁ ଫାଇଲଟା କୋଉଠି ଦେଖିଛି ବୋଲି ସବୁକଥା ଜାଣିଛୁ । ଏବେର ନୂଆଁ ଲୋକ ତ କିଛି ବି ଜାଣିବେନି । ଭଗବାନଙ୍କୁ ଡାକନ୍ତୁ, ଆପଣଙ୍କ ଫାଇଲ ପ୍ରଥମେ ମିଳୁ । ତାପରେ ଯାଇ ସେଇ କାଠଫାଠ କଥା । ଛାଡନ୍ତୁ ଏସବୁ ନନ୍-ଅଫିସିଏଲ୍, ମୁଁ କହିଛି ବୋଲି କାହାକୁ କହିବେନି ।"

ନେତ୍ରା ଫଁ କରି ନିସାସଟେ ଛାଡଲା । ତାକେ ବାଁତି ବାଁତି ଲାଗୁଥାଏ । ପାଉଁଚ ପାଉଁଚ ତଲକେ ତଲକେ ଉତରି ଆସଲା ନେତ୍ରା । ତଲେ ପାନ ଦୁକାନ । ଦୁକାନେ ଠିଆ ହେଇଥାଏ ସେ ପିଅନ । କେତେ ଦିନୁ ଚିନହିଁଛେ ନେତ୍ରାକେ, ଏକା ସାଁଗେ ଦିଲ୍ଲି ଜାଇଥିଲେ । ରହିଥିଲେ ଏକାସାଁଗେ ଦସ ଦିନ । ନେତ୍ରାକେ ଦେଖଲା ଜେନତା ହଁସଲା ସେ, ଆର କହେଲା, "ଭୁବନେସରେ ଯୋଉ ଉଇ......... ଏଠି ତମର କଲାକୃତି ସବୁ ଖୋଜିଲେ ଆଉ ମିଳିବ କୋଉଠି ।" ନେତ୍ରା ବୁଝି ନାଇଁ ପାରୁ ଥାଇ ଉଇ କାଣା ? ପଚରାଲା ଉଇ କାଣା ଆଜ୍ଞା ?

ପିଅନ କହେଲା: "ଉଇ ମାନେ ଆଉ କଣ, ଉଇ ମାନେ ଉଇ ।" ଚଟକରି ନେତ୍ରାର ସୋର ପଡଲା ଛୁଆବେଲର କଥା । ମାସଟର କେନତା ପିଟି ପିଟି ବୁଝେଇ ଥିଲେ i ବଏଲେ ମୁଇଁ ଆଉର we ବଏଲେ ଆମେ ମନେ । ନେତ୍ରା ସେ ପିଅନକେ କହେଲା : ଉଇ ବଏଲେ ଆପଣମାନେ । ପିଅନ ହଁସଲା ଯେ କାହୁଁ କାଣା । କହେଲା: "ଉଇ କେମିତି ବୁଝୁନାହାନ୍ତି, ସବୁ କିଛିକୁ ଖାଇ ମାଟି କରି ଦେଉଥିବା ଦଳଦଳ କୀଟ, ମାଟିରେ ରହନ୍ତି, ତମ ସେଠି କଣ କହ କେଜାଣି ?"

ନେତ୍ରା ତାହେଁରୁ ଜାନଲା ଯେ ଉଇ ବଏଲେ ଢୁକୁ । ଆର ହେତକି ବେଲୁ ଏକା ତାହାକେ ଲାଗୁଛେ ଇ ଭୁବନେସରେ ଚାରିଆଡେ ସଲବଲ ଢୁକୁ ।

********

ଛ’ ଦିନ ହେଲା ବସିଛେ ନେତ୍ରା କଚରି ଆଘେ ।

ସକାଲ ହେଲେ ଆଉଛନ ଦଲଦଲ ଲୋକ । ସାରା ଦିନ ଆହା ଚୁ ଚୁ । ସମକୁ ନେତ୍ରା କହୁଛେ ତାର ସେ କେତେଖଁଡ କାଠ୍ କେତେ କସଟେ ଠୁଲେଇଥିଲା, କେତେ ଜତନେ ରଖିଥିଲା ବରସ ବରସ । ସେମାନେ ଦିଲ୍ଲି ଗଲେ ଯେ ଆର ନାଇଁ ଫିରଲେ । ଏଛେନ କେନେ ଥିବେ କେ ଜାନେ । କେନେ କାଁଚର ଘରେ ସଜା ହେଇଥିବେ କାର ବଇଠକ ଖାନାନେ, ଆମର ଇ ଦେସେ, କି ବିଦେସର କେନ ଆଟ ଗେଲେରିନେ । ଝକମକୁଥିବେ କେତେ ରଁଗର ଲାଇଟ ଭିତରେ । ସେମନକର ଫଟୁ ରଖିଛେ ନେତ୍ରା । ଗାଁଧି ବୁଢ଼ାର ଫଟୁ ପାସେ ଉଲେଇକରି ରଖିଛେ ଧାଡିଧାଡି କରି । ଲୋକ ଆସଲେ ଦେଖଉଛେ । କହୁନ କହୁନ କହୁଛେ, “ମୋର ଜିବନନୁ ବଡ ଇ କେତେଖଁଡ କାଠ, ମତେ ଫିରେଇ ଦିଅ । ନାଇଁହେଲେ ନାଇଁ ଖାଏଁ, ନାଇଁ ପିଏଁ, ନାଇଁ ବଚେଁ । ନେତ୍ରା ବସିଛେ ଛ’ଦିନ ହେଲାନ ବଲାଙ୍ଗିରର କଚରି ଆଘେ ।”

କଲାକାର ଅଉଛନ, କବି ସାହିତିକ ଆଉଛନ, କହୁଛନ, “ଆମେ ଅଛୁଁ ନେତ୍ରା, ଆମେ ତମର ସାଁଗେ ଅଛୁଁ ।” ସାଂବାଦିକ ଅଉଛନ, ଫଟୁବାଲା ଅଉଛନ, କହୁଛନ, “ନେତ୍ରା ଆମେ ତମର କଥା ଲେଖୁଛୁଁ, ଦେଖବ ନ, କାଲକେ ବାହାରିବା ଫେର ଫଟୁ ସାଁଗେ ।” ସାହେବ ଅଉଛନ, ଡାକତର ଅଉଛନ କହୁଛନ, “ଖାଇ ଦିଅ ନେତ୍ରାନ , ଖାଇଦିଅ । ଦେହପା କଥା ଆମେ ଉପରକୁ ଲେଖୁଁଛୁ । ସମାଧାନର ବାଟଟିଏ ମିଳିବନି ?”

ଜେ ଜାର ଘରକେ ଫିରି ଜଉଛନ ରାଏତ ହେଲେ ।

ମୁନୁସ ଜିବନେ କେତେ କାମ କେତେ ଚିନତା । ତୁପି ହେଇ ଜଉଛେ ଆଝିର କଥା କାଲକେ । ଧାଁ ଧପଡଥି ଭୁଲି ହେଇ ଜଉଛେ ନିଜର କଥା ବି, ପରର କଥାଲାଗି ବେଲ କାଇଛେ ?

ନେତ୍ରା ବସିଛେ ଛ’ ଦିନ ହେଲାନ ।

ବସ ଜଉଛେ, ଟରକ ଜଉଛେ, ନୁଆଁ ସିନାମାର ପରଚାର ଲାଗି ମାଇକ ବଜେଇ ବଜେଇ ଜଉଛେ ରିକସା । ଆଝି ମନତିରି ଆଉଛନ ବଲି କହି ବୁଲୁଛେ ଜିପ । ସୁକତେଲର ବଂଧା ବଂଦ୍ କର ବଂଦ କର, ହାତେ ବୁଢାପଟା ଧରିକରି ସକାଲେ ଜଉଛେ ଗୁଟେ ମୁରଦାବାଦ ପରସେସନ । ବେଲବୁଡେ ସୁକତେଲ ବଂଧା ଜଲଦିକର ଜଲଦିକର ବଲି ଜଉଛେ ଗୁଟେ ଜିଂଦାବାଦ ପରସେସନ । ଧୁଲି ତୁପି ହେଇ ଜଉଛେ ନେତ୍ରା, ତାର ଆମରନ ଅନସନ, ଗାଂଧି ଫଟୁ, ଫଟୁର ଫୁଲମାଲ, ଅନସନର କହଁର, ତୁପି ହେଇ ଜଉଛେ ଇ ଧୁଲି ।

ରାଏତ୍ ହେଲେନ ଅଉଛନ ମସା, ପୁଲିସ, ରାତିର ବୁଲା କୁକୁର ଝନେ ଦୁଇଝନ ପାଗଲ, ଡେରି ନ ଘରକେ ଫିରୁଥିବାର ମଦୁଆ ।

ଟିକେ ଟିକେ ଅଟକୁଛନ ସଭେ, ଜେ ଜାର କଥା କହୁଛନ ବେସି । ନେତ୍ରାର କଥା ବି ସୁନୁଛନ ଜେ ।

ଦିନେ ରାତି ଝନେ ପାଗଲ କହେଲା, "ଅଲବତ ସରକାର ଆନି ଦେବା ତମର କାଠଖୁଁଟ । ଅଲବତ୍ ଆନିଦେବା ଜେନୁ ବି ଜାହିଁ ବି ଥଉ । ଅଲବତ ଫିରାବା ତମର କୁଟାକାଠି । ନେଇଛେ ବଏଲେ ଫିରାବା ତ ଅଲବତ । ନାଇଁ ହେଲେ କାଏଁଥି ପୁଡାମୁଁ ତମକୁ ।"

ନେତ୍ରା ଚମକି ପଡସି ଇ ଅଲବତ୍ ପାଗଲର୍ କଥା ସୁନିକରି, ସତେ ଜଦି ସେ ମରିଯିବା । ଇତିହାସନୁ ହଜିଜିବା ତାର ଇ ନୁରାଖୁଜାର କଥା, ମଠଖାଇର ସେ ଦୁଇ ସହ ଛ ଖଁଡ କାଠ୍, ଇ ମାଟିର ସପନ, ସମିଆ ଗଢିଥିବା ହେ କଲାକୃତି ସବୁ ହଜିଜିବା ?



# ହଜି ଜାଇଥିବାର କଲମ

ବୁଡୁଥିବାର ବେଲକେ ପଛ କରି ଶିବପ୍ରସାଦ ଚାଲସି ଅଁଧାର ଆଡକେ, ପୁରୁବକେ ।

ହାତେ ଧରିଥିସି ଗୁଟେ ଦୁଇହାତର ବାଡି, ହାଫ ପେଁଟର ମୁନାନେ ଛୋଟ ଗୁଟେ ସିସିନେ ପୁରତୁନ କିରାସିନି ତେଲ, ଖଁଦେ ଦୁଇ ତିନଟା ବହି ଆର ଛ ସାତଟା ଖାତା ଥିବାର ବେଗ । ବେଗ ଭିତରେ କରିଆନେ ବଁଧା ହେଇଥିସି ଭୁଜା, ସକାଲର ଲାଗି ।

ଶିବପ୍ରସାଦ ଚାଲୁଥିସି ଠୁକଠୁକ ବାଡି ପିଟି ପିଟି । ଇଟା ତାହେକେ ସିଖେଇଛନ ତାର ବୁଢିମା । "ସାଁପ ମନେ ଦେଖିନାଇଁ ପାରନ ରେ ବାବୁ, ଖାଲି ସୁନସନ । ବାଡି ଠୁକଠୁକ କରି ଜଦି ଜଉଥିବୁ, ସାଁପ ବେଁଗ, ବେଛୁ କଁଟିଆ ଆର ବାଟେ ନାଇ ରହନ ।"

ତାର ମାଁ ସିଖେଇଛନ ବାଟସାରା କହେବାକେ 'ଆସତିକ ଆସତିକ', ଗୁଟେ ଲମହା କଥାନି କହି କରି । ସାଁପ ଜାଏତକେ ପରେ ଜଗ୍ୟନେ ପୁଡି ମରବାନୁ ରକ୍ଷା କଲେ ଆସତିକ ମୁନି, ତାଁକୁ ଡାକୁଥିଲେ ସାଁପମନେ ଆର କିଛି ନାଇଁ କରନ । ଶିବପ୍ରସାଦ ଚାଲୁଥିସି ଇ ଭୁତଭୁତିଆ ଅଁଧାରେ ଭୁତ ବାଗିର ବାଡି ପିଟିପିଟି କହି କହି 'ଆସତିକ ଆସତିକ' ।

ଗାଏ ଦାମୁର ଛେଲ ମେଢି ଫିରି ଆଏସନ ଘରକେ । ଖେତୁ ଖଲୁ ଲୋକମନେ ଘରକେ ଫିରିଆଏସନ । ତୁଲସି ଚଁଅରାର ଦିପ ଲିଭିକରି ତାର କଁହର ବୁଲୁଥିସି ଘର ସାରା । ଶିବପ୍ରସାଦ ଘରୁ ବାହାରି ପଡସି ଏକମୁହାଁ ପାଖର ଗାଁର ଇସକୁଲ ଘରକେ ଏକଲା । ବାଟେ କେଭେ କେଭେ ଭେଟସି ଗୁଟେ ଅଧେ କୁଲିହା, ନାଇ ଡରେ, ଜାନିଛେ , କୁଲିହା ଦେଖଲେ ସୁଭ ହେସି । ବାଟେ କେଭେ କେଭେ ଭେଟସି ବାଟ ଭୁଲି ରହି ଜାଇଥିବାର ବଲଦ ଗାଏ, ତରତର ହେଇ ଧାଉଁଥିସନ ଗାଁ ଆଡକେ । ହେଲେ, ସବୁ ଦିନ ଭେଟସି ଗୋଡ ଧୁଇଦେମି

ବଲି ଜୁଗିଥିବାର ସେ ନଏଦକେ । ନଏଦ ଦେଖଲେ ଉସାସ ଲାଗସି ଶିବପ୍ରସାଦକେ, ପୁହୁଁଚିଗଲା ବଲି, ଦୁଇ ମାଇଲ ବାଟର ଇ ଇସକୁଲ ଘରେ । ପାଖର ଗାଁନୁ ଆସିଥିନ ପିଲାମନେ, ଆସିଥିସନ କୁମରା ଆଗ୍ୟା ତାକର ସାଇକଲ ଧରି କରି । ସାଇକଲର ଆଘେ ଉଲାହେଇଥିସି ଖାନା । ଆଗ୍ୟା ଖାଏସନ ଆମକୁ ଟିଉସନ ପଢେଇ ସାରଲେ ।

ଇସକୁଲ ଘରର ବାରଁଡାନେ ଧାଡିହେଇ ବସିଥିସନ ପିଲାମନେ, ଆଘେ ଗୁଟେ ଗୁଟେ ଡିବିରି ଜାଲି କରି । ଶିବପ୍ରସାଦ ବି ବସି ଜାଏସି ତରତର ହେଇକରି, ଜଲାସି ତାର ଡିବିରି । ଆଗ୍ୟାମନେ ପଢାସନ, ପଢଉଥିସନ । ଖୁସୁରମୁସୁର ହେସନ ଶିବପ୍ରସାଦମନେ, ଝୁମୁରୁଥିସନ ଶିବପ୍ରସାଦମନେ ।

ଖରାଦିନିଆ ହୁଲକେ ଧୁକା ଘାଏ ଘାଏ ଫୁଁକି ଦଉଥିସି ଡିବିରି । ପିଲାମନେ ପାଖର ଡିବିରିନୁ ଜଲାସନ ନାଇ ହେଲେ ଆଗ୍ୟାର ଲାଲଟିନନୁ । ସବୁ ଆଡେ ଗିଲଗିଲ ଅଁଧାର ଭିତରେ ଜଲୁଥିସି ଇ କେତେଟା ଡିବିରି , କେତେ ରାଏତ ତକ ଇ ଅଁଚଲର ଅଁଧାର ଖେଦବାକେ । କେଭେ କେଭେ ଆଏସି ଧୁକା ବାଦଲ ଘଡଘଡି, ଲୁଁଡପଁଡ ହେଇ ସଭେ ଲୁକି ଜାଏସନ ଇସକୁଲ ଘର ଭିତରକେ । ସାରା ରାଏତ ବାହାରେ ବାଜୁଥିସି ଘଡଘଡି, ନାଚୁଥିସି ବରସା ।

ସଭେ ସୁଇପଡସନ ସେଦିନ, ଖାଲି ଜୁଲଜୁଲ ଜଲୁଥିସି କୁମରା ଆଗ୍ୟାର ଦୁଇଟା ଆଏଖ ଆର ତାଁକର ଲାଲଟିନ । ଘର ଦୁଆର ଛାଡି କୁମରା ଆଗ୍ୟା ଜୁଗିଥିନ ସକାଲତକ ।

ପୁନାର କେଲକର ମିଉଜିଅମନେ ଇ କାହିଁ କେତେ ଦିନର ଘରି, ଝାଁପି, ରୁବନା ଆର ଘୁରନା ଦେଖୁନ ଦେଖୁନ ଶିବପ୍ରସାଦଁକର ସୋର ପଡି ଜଉଥିଲା, ତାର ପିଲାଦିନର ଗାଁର କଥା । ଇ ରକମ ରକମର କଲମ, ଇ ସାହି ଦୁଆତ ସାଁଗେ କାଠି କଲମ, ସୋର ପକେଇ ଦଉଥିଲା ତାଁକର ପିଲା ଦିନର ଇସକୁଲ, କୁମରା ଆଗ୍ୟାର ଜଲଲା ଜଲଲା ଆଏଖ । ଶିବପ୍ରସାଦ ଜେନତା ଏଛେନ ଫିରି ଜାଇଛନ ଅତିତକେ, ନ ଦସ ବରସର ପିଲା ହେଇକରି ଦେଖୁଛନ ଇ କେଲକର ମିଉଜିଅମକେ ।

ଗୁଟେ ବାଲଟିନନେ ସାହି ଗୁଲିକରି ପିଲାମନକୁ ସାହି ବାଁଟୁଥିଲେ ଆଗ୍ୟାମନେ ପରିକ୍ଷାର ଆଘର ଦିନ । ବୁତଲମନକୁ ଛିନି ରଖୁଥିଲେ ପିଲେ, ଦୁଆତମନକୁ ଆର ଦିନ ଧରିକରି ଆସୁଥିଲେ ପରିକ୍ଷା ଦେବାକେ, ହାତେ କାଠି କଲମ ଧରିକରି ।

ଶିବପ୍ରସାଦର ଆର ବି ସୋର ପଡୁଥାଏ, ବିଜୟ କେନତା ରୁକି ଦେଇଥିଲା ପୁରା ଦୁଆତେ ସାହି ପରିକ୍ଷା ସରୁନ ସରୁନ ତାର ମୁଡ ଉପରେ । ପରିକ୍ଷା ନେ ଉତର ନାଇ କହି ଦେଲା ବଲି । ପାଁଚ ଦିନ ତକ କଲା ହେଇଜାଇ ଥିଲା ତାର ମୁହଁର ଗୁଟେ ଫାଲ । ତାର ପେଁଟ ସାଟର ସାହି ଛାଡୁନ ଛାଡୁନ ତ ଲାଗିଗଲା ପୁରା ମାସେ । ତାର ମାଁ ଗିରା ସାଗୁନନେ ରେଡି ରେଡି ଛଡାଲେ ବଲି ଛାଡଲା । ବିଜୟକେ ଆଗ୍ୟା ପିଟଲେ ମରତୁନ । ସେ ପରେ ତତଲା ଭାତ ନାଇଁ ଖାଇପାରଲା ପାଁଚ ଦିନ ।

ପଚାସ ବଛର ହେଇ ଗଲାନ । ଏଭେ ବି ସୋର ପଡଲେ ମୁହୁଁ କଲା ହେଇ ଜାଏସି, ଶିବପ୍ରାସଦଁକର ହାତ ଗୋଡ ଅବସ ଲାଗସି ।

ବିଜୟ ବାପା ଥିଲେ, ପାଖର ଥାନାନେ ଚପରାସି । କେତେ ଦିନ ଗଲାକେ ତାହାକେ ଘିନି ଦେଲେ ଗୁଟେ ଫାଉଟେନ ପେନ, ରାଉରକେଲା ଏକସପ୍ରେସ । ଥରେ ସାହି ଭରି ଦେଲେ ଲେଖୁଥନ ଚାଏର ଦିନ ପାଁଚ ଦିନ, ଜେତେ ଲେଖବ ଲେଖ । ବିଜୟର ଉସତ କିଏ ଦେଖେ ।

ଶିବପ୍ରସାଦ ତ ଦୁଇ ଦିନ ପଢି ନାଇଁ ଜାଇ । କାଁଦି କାଁଦି ଗୁଟେନ ରାହା ଧରିଥିଲା, ଇ ଦୁଆତ ଆର କାଠିକଲମ ସେ ନାଇଁ ନିଏ ନ ଇସକୁଲକେ । ସିସାନେ ପଛେ ଲଖବା । ବୁଝେଇ ବୁଝେଇ ତାର ମା ଆର ବାପା ଅଥା । "ଆମେ ରେ ବାବୁ ଗରିବ ଲୋକ, କେନୁ ପାଏମା ଏଛେନ ଟଁକାଟେ । କଲମ ବି ତ ଇନେ କେନେ ନାଇଁ ମିଲେ ଉଧାର ବାଏଡ କରି ଘିନ୍‌ବା କେ, ହେଥିର ଲାଗି ଜିବାକେ ପଡବା ବଲାଁଗେର ।"

ଶିବପ୍ରସାଦ ନାଇଁ ବୁଝୁଥାଇ ଦିନ ରାଏତ ଡାକୁଥାଏ ଭଗବାନକେ । କହୁଥାଏ : 'ଆମକୁ ଟଁକାଟେ ମିଲି ଜଉ ପ୍ରଭୁ, ଆଏଜନ' । ଇସକୁଲ ଗଲା ବେଲକେ ଦେଖୁଥାଏ ବେନାଗଛ ତଲକେ, ଝଲ ଝଲ ନଦିର ପାନି କାଣା ଚକ ଚକ କଲେ ଅଟକି ଜାଇ ନୁରୁଥାଏ ନଦିର ବାଲି । ଲାଗୁଥାଏ ଇ ଗୁଟେ ଟଁକା ତାର ଜିବନର ସବୁ ।

ଭଗବାନ ସେସେ ସୁନଲେ, ତାର ଡାକ । ସତକେ ସତ ମିଲିଗଲା ଚାଏର ଦିନ ହେଲା ଖୁଜୁଥିବାର ଗୁଟେ ଟଁକା । ଶିବପ୍ରସାଦର ଆଏଜ ବି ଝଲ କରି ଦିସି ଜାଏସି ସେ ଦିନର କଥା ।

ଦୁଇ ଦିନ ଶିବପ୍ରସାଦ ଇସକୁଲ ନାଇ ଜାଇ ବଲି ଘର ପୁହୁଚିଗଲେ କୁମରା ଆଗ୍ୟାଁ । କହେଲେ, "ବେଡା, ବୁରତି ପରିକ୍ଷା ଆଘେ ଅଛେ , ନାଇ ପଢଲେ କେନତା ହେବା । ଚାଲ, ମୁଇଁ ଗୁଟେ କଲମ ଦେଇଥିମି, ତୋର କଲମ ଘିନଲା ତକ । ବିଜୟକେ ଡରୁଛୁ କାଏଁ , ମୁଁ ପରେ ଅଛେ ବୋ ।"

ଶିବପ୍ରସାଦ ଟିଉସନ ଗଲା ହେ ଦିନ ବେଲବୁଡେ ।

ସକାଲ ପଢା ସାରି କରି ଇସକୁଲୁ ଫିରଲା ବେଲକେ ବାଟର ଘରେ ଗୁଟେ ପଟିଥି ବସିଥନ ତାର ଅଜା । ଆଘେ ହାତ ଜୁଡି କରି ଆର ଗୁଟେ ପଟିନେ ବସିଥାଏ ଗାଁର ଗଁତିଆ ବୁଢା । ଅଜାକେ ଦେଖିକରି ଜେତକି ଗହକି ହେଲା ସେ, ତାର ଠାନୁ ଜହ ମଜା ଲାଗଲା ଗଁତିଆ ବୁଢାର ହାତଜୁଡି କରି ବସିଥିବାର ଦେଖି କରି । ସାତ ଦିନ ତଲେ ଧାଇଁ ଆସିଥିଲା ଇ ଗଁତିଆ ବୁଢା ରଡିରଡି, ଶିବପ୍ରସାଦ ମନକୁ ତାର ଆମ ବୁରେଇକେ ଆମ ବେଟିଜାଇଥଲେ ବଲି ।

ଦେଖ, ଆଏଜ ବୁଢ଼ା ବସିଛେ ହାତ ଜୁଡ଼ିକର, ଆଁ କରି ଦେଖୁଛେ ଡୁଗଡୁଗ ମୁଟମୁଟ । ଅଜା ତଲେ କାଟିଥନ ଖଡ଼ି, ଗନୁଥନ ଆଁଗଠି ମନକୁ, ଦେଖୁଥନ ପାଁଜି, ଗୁନଗୁନଉଥନ କାଣା କାଣା ମନେ ମନେ ।

ଶିବପ୍ରସାଦ ରପଟି ଗଲା ଅଜାର ପାଖକେ । ଫେର ଫିରିଆଏଲା କାଣା ଭାବି କରି । ଅଜା କହେଲେ : "ର, ଦାଦା, ସରି ଜଉ ଇଟା । ଫେର ଆମେ କଥା ହେମା ଜେ । ମୁଇଁ କାଣା ଆନି ଦେଇଛେ, ଦେଖ ତ , ମାଁ କେ ମାଗ ।"

ଅଜା ଫେର ଲାଗିଗଲେ ତାଁକର ଗୁନଗୁନଥି ।

ଘରକେ ନରଧି ଗଲା ଶିବପ୍ରସାଦ ଅଜାର କଥା ଭାବି ଭାବି । ଅଜା ପରେ ପଢ଼ିଛନ ଗୁରୁଦୁଟେ ପାଠ । ଦେ ଦେବତାର ସାଁଗେ କଥା ହେସନ ଏନତା ଗୁନଗୁନ ହେଇକରି । ରଜାବି ଜୁହାର କରସି ଅଜାକେ । ଜରାସିଁହାର ଜମିଦାର, ପାଟନାର ରଜା ସଭେ ଜାନିଛନ , ସମକର ସାଁଗେ ଚଉକିନେ ବସସନ ଆମର ଅଜା । କାନେ ଜେନ କୁନଡଲ ପିନଧିଛନ, ସେଟା ପରେ ପାଟନାର ରଜା ଦେଇଛେ ପୁରୁସକାର । ମା କହେସି, ରଜା ବିହାବେଲେ ଅଜା ଜାଇଥିଲେ ପାତିଆଲା ଜମିଦାର ବୁଢ଼ାର ସାଁଗେ । ଭାବସି, ର' ସେ ଆଜି ହେ କଥା ପଚରାବା ।

ଭାବି ଭାବି ଖୁଟିଥି ବେଗକେ ଉଲେଇ ଦେଲା ଶିବପ୍ରସାଦ । ଦୁଆତ ରଖିଦେଲା ଫୁଲିଥି । ଦୁଇ ଦିନ ଇସକୁଲ ନାଇଁ ଜାଇ କଲମ ଲାଗି । ଆଏଜ ଦୁଇ ଦିନର ସେ ସବୁ ଲେଖଲେ ଜେ । ମାଁ ଡାକଲେ ରଁଧାଘରୁ, ପେଟ ସାଟ ପାଲଟି କରି ରଁଧା ଘରକେ ଧାଇଁ ଗଲା ଶିବପ୍ରସାଦ । କାଲହିର ବେଲ ବୁଡେ ଜାଇଥଲା ଜେ, ଆସୁଛେ ଆଝିର ଦିନର ଏଗାର ବଜେ । ବାହାରେ ଖରା, ପେଟେ ଭୋକ ।

*******

ରାତିର ସାଢେ ଏଗାର ।

ଡେକାନ କଲେଜର ଗେସଟ ହାଉସନେ ସୁଇ ସୁଇ ଶିବପ୍ରସାଦ ଭାବୁଥିଲେ କେଲକର ମିଉଜିଅମର କଥା । କେତେ ରକମର ଜୁନହା ପୁରନା ଜିନିସ ସାରା ଭାରତର ଜମା କରି ସଜା ହେଇଛେ ସେନେ । ସମିଆର ଧାରେ ଉହୁଲି ନାଇ ଜାଇପାରି ବଲି ଅଜେଇ ହେଇକରି ରହି ଜାଇଛେ ଖଁଡି । ଜଗତେ କେତେ ଜେ ଜିନିସ ବଦଲିଛେ, କେତେ ହଜି ଜାଇଛେ ତାର ହିସାବ ନାଇଁ । ଘାଏ ଘାଏ ଲାଗସି, ବଦଲି ବଦଲି ନିଜର ମୁଲ ହଜାବାର ଠାନୁ ପୁରା ହଜି ଜିବାରଟା ଭଲ । ହଜି ଜ', ରହି ଜ'କେନ ସମିଆର ମିଉଜିଅମନେ, କିହେ କେଭେ ତମକୁ ସୋର ପକେଇ କରି ଦେଖଲେ ଭଲ, ନାଇ ହେଲେ ଟାକି ଥ', କେଭେ ତ ଝନେ ଆସବା ଭବିସ୍ୟତନେ ତମକୁ ନୁରି ନୁରି ।

ଚାଏର ଦିନ ହେଲା ଶିବପ୍ରସାଦ ଆସିଛନ ପୁନେ । ଲୋକ ବିଦ୍ୟା ବିସେନେ ଗୁଟେ ସେମିନାର ଲାଗି । କାଲି ସରିଗଲା ସେମିନାର, ଆଏଜ ଥିଲା ପୁନେ ଦରସନ । ଶିବପ୍ରସାଦ ଦେଖଲେ, ତିଲକବାଡା, ଜେନେ ତିଲକ ଦେଖିଥଲେ ସୁଆଧିନ ଭାରତର ସପନ । ଦେଖଲେ, ଆଗା ଖାଁ ପେଲେସ, ଜେନେ ଗାଁଧି କାଟିଥିଲେ ଦୁଇ ବଛର ମିତାନ । ସେନେ ଗାଁଧି ହରେଇ ଥିଲେ ଜିବନର ଦୁଇ ସହଜୋଗି କସତୁରବା ଆର ମହାଦେବ ଦେସାଇ କେ ।

ଶିବପ୍ରସାଦ କଡ ଲେହେଟାଲେ । ମୁନୁସ ଜିବନ କାଁ କରି, କାର ଲାଗି ଇ ମୁନୁସ ଜିବନ ?

ସୋର ପଡଲା ପିଲା ଦିନର ସୁନିଥିବାର ଗୁଟେ କଥା ।

ପାହାଡ ଉପରେ ନାଚୁଥନ ଶିବ ମହାପୁରୁ, ନାଇ ମେଘର ଉପରେ, ମେଘର କୁହୁଲା ଉପରେ ନାଚୁଥନ । ତାର ପାଖେ ଏକା ଖେଲୁଥନ ଦଲେ ଛୁଆ ଛୁଆ ପିଲା । ଦେଖୁଥନ, ଗୁଟେ ହାତେ ଡମରୁ ବଜେଇ ଭାଁଆର ଭାଁଆର କିନଦିରି ଗୁଟେ ଗୁଡେ ନାଚୁଥିବାର ଶିବ ମାହାପୁରୁକେ । କାହି କେତେ ତଲେ ମାଟି, ହେଲେ ଫଟିକ ଦିସୁଥାଏ ମତେ, ହାତ ଜୁଡି କରି ବସିଥାଏ ମୁଇଁ । " ହେ ପିଲା ଗୁଟେ ମତେ ଦିଅ ମହାପୁରୁ"- ଶିବପ୍ରସାଦର ମାଁ ପରେ କହେଲେ ସପନେ ।

'କାଁ କରବୁ' – ମୁଲ ମୁଲ ହସି ହସି ପଚରାଲେ ଶିବ ମହାପୁରୁ ।

'ମୋର ପୁଓ ହେବା, ମୋର ନାଁ ରଖବା ଜଗତନେ'- କହେଲେ ପରେ ଶିବପ୍ରସାଦର ମାଁ ।

ଶିବ ମାହାପୁରୁ ହଁସଲେ । ହଁସୁ ହଁସୁ ଏକା ଉପରୁ ଖସରି ଖସରି ତଲକେ ଉତରି ଆଏଲା ଗୁଟେ ପିଲା ।

ମାଁର ପରେ ନିଦ ଭାଁଗି ଜାଇଥିଲା ହେତକି ବେଲେ । ବିହାର ବାର ବରସ ପଛେ ଜନମ ହେଲା ଶିବପ୍ରସାଦ, ତାର ବରସେ ପରେ । କେତେ ଥର ଶିବପ୍ରସାଦ ସୁନିଛେ ମାଁଆରନୁ ଇ ଗୁଟେ କଥା । ତୁଇ ପାରବୁ ରେ ବାବୁ, ଜିବନନେ ତୁଇ କିଛି ନୁଆଁ କରିପାରବୁ ।

ଶିବପ୍ରସାଦ ଲଢିଛନ ଜିବନର ସବୁ ଠାନେ, ଖୁଜିଛନ ସବୁ କୁନେ । ଆଏଜ ତାଁକୁ ଲାଗୁଛେ, ହାରି ଜାଇଛନ ସେ । ହଜେଇଛନ କାଣା ଗୁଟେ । ଶିବପ୍ରସାଦ ଛୁଆବେଲେ କାଣା ହଜେଇ ଦେଲେ ମାଗୁଥିଲେ ମାହାପୁରୁକେ । ଜେତେବେଲେ ଜାହା ମାଗୁଥିଲେ ଦେଇ ବି ଦଉଥିଲେ ମାହାପୁରୁ । କଲମ ଘିନବାକେ ଟଁକାଟେ ମାଗିଥିଲା ଶିବପ୍ରସାଦ, ସେଦିନ ଏକା ଅଜା ଆସି କରି ଖଡି ଦେଖା ପଏସା ଦେଇଦେଲେ ତାହାକେ । କଲମ ଘିନି ଆନିଦେଲେ ତାର ବାପା ବଲାଁଗିରୁ ।

ଆଏଜ ବି ସୋର ପକାସନ ଶିବପ୍ରସାଦ, ସେଦିନର ସେ ପ୍ଲାଟୋ କଲମକେ । କାଁକରି ଆଏଜ ଫେର ଘାଏ ସୋର ପଡଲା ସକାଲର ସେ କଲମ କିଏ ଜାନି ? ତାର ଚକ ଚକ ସୁନା ବାଗିର ନିବ୍, ରୁପା ବାଗିର କେପ । ଆଗ୍ୟାମନେ କହୁଥଲେ: 'ଶିବ ତୋର କଲମ ଟିକେ ଆନତ ରେ ବାବୁ' । ସାଁଗମନେ କହୁଥିଲେ : 'ଦେଖୁଁ ଦେଖୁ କେନତା ଚାଲୁଛେ ତୋର କଲମ । ଆମେ ବି ଘିନମୁ ଜେ, ର ମୋର ବାପାକେ କହେମି....'

ତାହାକେ ହେତେବେଲେ ଲାଗୁଥିଲା, ଇ କଲମନେ ଲେଖିହେଇ ଜିବା ସବୁ । ମନର କଥା ଲେଖବାକେ ଅଥକ ହେଇ ଚାଲବା ଇ କଲମ ।

ଠିକ କହିଛନ ତାର ଅଜା: "ଦେଖ , ଦାଦା ଇ କଲମନେ ଗିତ ଲେଖବୁ, ପୁରାନ ଲେଖବୁ, ବଡ ବଡ କାବ୍ୟ ବି ଲେଖବୁ । କେତେ ଲୋକ ସେଟାକେ ପଢବେ, ନାଁ ପଡବା, ପାଁଚ ଲୁକେ ଲୋକଟେ ହେବୁ ।"

ତାହାକେ ହେତେବେଲେ ଲାଗୁଥିଲା, ଇ କଲମ ତାର ପାଖେଥିବା ନ, ଜେନତା ଶିବ ମାହାପୁରୁର ତିରସୁଲ, କୁସ୍‌ଟ ମାହାପୁରୁର ଚକର, ମା ଦୁରଗାର ଖଁଡା । ଜେତେବେଲେ ଜିବନନେ ଜାହା ବି ଆସୁଥବା ବିପଦ ଆପଦ ଇ କଲମ ତାର ସାହା ହେବା ।

ଦିନେ ହଜିଗଲା ସେ କଲମ । ନାଇ ହଜିଜାଇ କିଏ ନେଇ ଜାଇଥିବା ।

ନାଇ ଜନାପଡଲା କିଏ ନେଲା, କେନେ ହଜଲା । ଇସକୁଲର ଆଗ୍ୟାମନେ ନୁରାଖୁଜା କଲେ, ସବୁ ବସତାନି ଝରା ହେଲା, ପିଲାମନେ ଖୁଜଲେ ପଡିଆ ସାରା । ଝନେ ଝନେ କରି ସମକୁ ପଚରାଲେ କୁମରା ଆଗ୍ୟା । ଶିବପ୍ରସାଦ ହେଦିନ ରାତି ନାଇ ଖାଇ କିଛି ବି, ସୁଇପଡଲା କାଁଦି କାଁଦି । ହେ ରାତି ଏକା ସେ ସପନ ଦେଖଲା ଶିବ ମାହାପୁରୁକେ । ମାଗଲା : "ଦିଅ ମାହାପୁରୁ, ମୋର କଲମ କେନେ ଅଛେ ଆନି ଦିଅ ।"

ମାହାପୁରୁ ନାଇ ସୁନଲା ବାଗିର ହଁସି ହଁସି ହଜିଗଲେ କେନ ମେଘର ଉହାଡେ । ସକାଲୁ ତାର ମାଆ ତାହାକେ ବୁଝାଲେ ଇଟା ସୁନିକରି: "ତୋର କଲମ ନୁରି ଦେବାକେ ମାହାପୁରୁ ଆଏବେ କାଁକରି । ଆର ଗୁଟେ ପଠେଇ ଦେବେ, ର ଦେଖବୁ । କେତେ ପଏସା କମାବୁ , କେତେ କଲମ ଘିନବୁ.."

କଲମନୁ ଡଟ କଲମ, ଡଟ କଲମନୁ ଜେଲ ପେନ, ଡେସକ ଟପ, ପାମ ଟପ, ଲେବ ଟପ କେତେ ଥି କେତେ କଥା ଲେଖଲେ ନ ଶିବପ୍ରସାଦ । ଏଭେ ବି ଲାଗୁଛେ, ନାଇଁ ଲେଖି ହେବାର ମନର କଥା । ଜେନଟା ଲେଖିମି ବଲି ଭାବୁଛନ ନାଇ ଲେଖି ହେବାର ଇଥି ।

ଶିବପ୍ରସାଦ ବାଥ୍ ରୁମକେ ଗଲେ, ଆସିକରି ପାଏନ ପିଇଲେ, ଘଁଟା ଦେଖଲେ, ରାତିର ଦୁଇ ପଁଦର । ସକାଲୁ ଟ୍ରେନ ଅଛେ, ସାତ ପାଁଚ । ସାଢେ ପାଁଚ ତକ ଉଠଲେ ଜେ

ଚଲେ । ମୋବାଇଲନେ ଆଲାରାମ ଦେଇ, ଲାଇଟ ଲିଭାଲେ ଶିବପ୍ରସାଦ, ସବୁଆଡେ ଅଁଧାର କୁହୁ କୁହୁ, ସୁଇବାକେ ଚେସଟା କଲେ ।

*******

'ସାଠେ.. ସତୁର .. ଅସି .. , ନାଇଁ ଆରୁ ନାଇ'– ଶିବ ନିଜକେ ନିଜେ କହୁଥାଏ ।

ଲାଇଟ ଉକିଆନେ ଜେତକି ଦିସୁଛେ ବାଟ, ରାସତାର ଦୁଇ ପାଖେ ବଡ ବଡ ଗଛ, ମଝି ସାଁପ ଲହରିଆ ବାଟ । ସବୁଆଡେ କୁହୁ କୁହୁ ଅଁଧାର । କେନେ ପିଟି ହେଇଜିବା କେତେବେଲେ, ଡରୁଥାଏ ଶିବ । ଜେତେ ଧିରେ ଧିରେ ଚଲାବାକେ ଚେରେସଟା କରୁଥିଲେ ବି ନାଇ ମାନୁଥାଇ କାର । ଆରୁ ବଢୁଥାଏ, ଆଗକେ ଆଗକେ ଦଉଡୁଥାଏ –ଅସି .. ନବେ .. ସହେ.. ।

ଶିବ ମାହାପୁରୁ କେ ଡାକଲା, "ଇ ଥରେ ସୁନ, ଇ ଥରେ ତ  ମାହାପୁରୁ, ଛୁଆ ବେଲେ ଶୁନୁଥିଲ । ସାରା ଜିବନ ତ କେଭେ କିଛି ନାଇ ଦେଲ, କେତେ ମାଗିଛେ । ଇ ଥରେ ତ ସୁନ, ରହିଜଉ ଇ କାର .. ରହିଜଉ " ।

ଶିବକେ ଲାଗଲା ଆଘେ ଆସୁଛେ କାଣା ଗୁଟେ । କେନ ଗୁଟେ ଉକିଆ ଭିତରକେ ଭିତରକେ ସମିଜଉଛେ ଶିବର କାର ..

ଠପ କରି କାର ରହିଗଲା ।

ସେ ଦେଖଲା ଆଘେ କେତନି କେତେ ବଡ ଗୁଟେ ଘର । ଘର ନାଇ ତ ଲାଗୁଥିଲା ମଁନ୍ଦିର ବାଗିର । ଶିବ କାରନୁ ଉତରୁନ ଉତରୁନ ଜୁଗିଥିଲା ବାଗିର ତାହାକେ ଡାକିନେଲେ ଧୋବ ପେଁଟ ସାଟ ପିଁଧା ଦୁଇଝନ ଲୋକ । ମାରବଲର ପଁଉଚ ଚଢୁନ ଚଢୁନ ଶିବ ଦେଖଲା ସବୁ ଆଡେ ଫୁଲ । କେତେ ରକମର ଗଛ ପତର, କେତେ ରକମର କଁହର ।

ସେ ଭାବଲା ଇ ମନକୁ ଇଟା କାର ଘର, କାଁ କରି  ଡାକି ନଉଛ ମତେ । ସେମନକର ଆଡେ ଦେଖୁନ ଦେଖୁନ ଦେଖଲା, ସେମନେ ପୁହୁଚିଗଲେନ ବଡ ଗୁଟେ ହଲ ଭିତରେ । ଧୁରେ ସିଁହାସନ ବାଗିର ଗୁଟେ ସୋଫା ଉପରେ ଏକଲା ବସିଛେ ଝନେ ଦର ବୁଢା ଲୋକ । ଏତେ ଉକିଆ ଦିସୁଥାଏ ଜେ,ଜନା ନାଇ ପଡୁଥାଇ ଇଟା ସତେ ଲୋକ କି ଲୋକର ମୁରତି । ମଁନ୍ଦିର ବାଗିର କଁହର ଆସୁଥାଏ ହେଲେ, ଆରୁ କିହେ ନାଇ ଥାଇ ପାଖେ ଆଖେ । ଶିବ ସେ ଆଡକେ ଗଲା, ଆର ପାଖକେ ପାଖକେ । ଜେତେ ଚାଲୁଥାଏ, ବାଟ ନାଇଁ ସରୁଥାଇ, ବାଟ ଲମି ଜଉଥାଏ ଆର ଆଗକେ ଆଗକେ ।

ଶିବର ତୁଁଡ ଅଠା ଅଠା ହେଇଗଲା, ଠିଆ ହେଲା ଶିବ । ସାଁଗେ ଆସୁଥିବା ଦୁଇ ଲୋକ ଫିରିଗଲେ ଭଟାକେ, ଶିବ ପୁରା ଏକଲା । ସେନୁ ଆଗ କେ ଜିବାର ତାର ଆରୁ ବଲ ନାଇଁ, ସେ ଠିଆ ହେଇଥାଏ ସେନେ ।

ସୋଫାନୁ, ଉକିଆନୁ ଉଠଲା ସେ ଲୋକ ଆସଲା ଆଗକେ ଆଗକେ । ଜେତେ ଜେତେ ପାଖକେ ଆସୁଥାଏ ସେ ଲୋକ, ଶିବକେ ଲାଗୁଥାଏ କେନେ ଦେଖିଛେ କେଭେ ।

"ଆରେ ବିଜୟ ତୁଇ ଇନେ " ଅଚାନକ ବାହାରି ପଡଲା ଶିବର ତୁଁଡୁ ।

"ହଁ, ଭାଇ ଏମେଲେ ହେଲି ଦୁଇ ଥର, ଏଭେ ହେଇଛେ ମନତିରି । ଇ ନେ ରହିକରି ସେବା କରୁଛେ ଲୋକ ମନକର । ଆର କହ ତୁଇ କେନତା ଅଛୁ, କେନତା ସୋର କଲୁ ଆଏଜ ବୋ କେଭେ ତ ନାଇଁ ଆସୁ ...."- ବିଜୟ କହୁଥିଲା ।

ମୁଟା ହେଇ ଜାଇଥିଲା ବିଜୟ, ପୁରା ଧୋବ ଚରଚର ହେଇ ଜାଇଥିଲା ତାର ଚେହେରା । ପିଁଧି ଥିଲା ବି ଧୋବ ଖଦଡ ପେଁଟ ସାଟ ।

ଶିବର ସୋର ନାଇ ପଡୁଥାଇ କାହିର ଲାଗି ଆସିଥଲା । ସେ ତ ବିଜୟକେ ଭେଟବାର ଲାଗି ନାଇଁ ଆସି ଘରୁ । ସେ ତ ନାଇ ଜାନି ଇଟା କେନ ଜାଗାନେ ପୁହୁଚି ଜାଇଛେ ସେ । ଥତମତ ହେଇଗଲା ଶିବ । କହେଲା : "ମୋର ସେ କଲମ ବୋ, କେନେ ହଜିଗଲା, ନୁରୁଛେ ହେତକି ଦିନୁ, ନାଇ ମିଲୁଛେ ଆଏଜ ତକ.. .. "

ବିଜୟ ଭାବଲା ଟିକେ ବେଲ, ଜେନତା ଭାବୁଥିଲା କହେମି କି ନାଇଁ । ସେସେ କହେଲା : " ବସ ଟିକେ, ମୁଁଇ ଖୁଜି ଦେମି । ହେତକି ଦିନୁ ଭେଟ ଘାଟ, ଟିକେ ଚାହାପାଏନ ତ ପିଉଁ .."

" ନାଇଁ , ନାଇଁ ଆଘୋ ମୋର ସେ କଲମ ଏକା ଦରକାର "- ଶିବ କହେଲା ଛୁଆ ପିଲାଟେ ରାହା ଧରି କାଁଦଲା ବାଗିର ।

ଶିବକେ ଲାଗଲା, ଆରେ କାଣା ହେଇଗଲା ତାର କାଁଦଲା ବାଗିର କାଁକରି କହୁଛେ । ହାତକେ ମୁଠା ମୁଠା କଲା, ଜୋର ସେ ନେଲା ନିସାସ, ମାଟି ଦଁଭିଲା କଲା ପାହାକେ ।

"ସତ କହେଲେ ଗା ରେ ଭାଇ, ମୁଇଁ ଏକା ସେ କଲମ ନେଇ ଥିଲି, ଘରକେ ନାଇଁ ନେଇ, ଏଭେ ମୋରନେ ବି ନାଇ ନ । ଇସକୁଲର ପଛ ଫାଲେ ଥିଲା ଜେନ ଚଁପାଗଛ, ତାର ତଲେ ଥିବାର ବିନୁଆଁ ନେ ଗଲେଇ ଦେଇ ଥିଲି ।

କିଏ କିଏ ଦେଖି ଥିଲେ, ହେଲେ ମୋର ଡରେ କିହେ ନାଇ କହି କାହାକେ । ତୁଇ ଜଦି ଆଏଜ ତକ ନୁରୁଛୁ ସେ କଲମକେ, ମୁଇଁ ନୁରି ଦେମି, ବିନୁଆଁ କୁଡେଇ କରି ଆନି ଦେମି । ହେଲେ ରେ ଭାଇ, ତାର ସୁନା ବାଗିର ନିବ୍ ତ ଆର ଚକଚକ ନାଇ କରୁଥାଏ ଆଏଜ ତକ, ମୁରଚା ଲାଗି ଜାଇଥିବାନ, ହେଥି ଆର କାଣା ଲେଖି ହେବା ଏଭେ ? କଲା ପଡିଥିବାନ ତାର ରୁପା ବାଗିର କେପ । ହେଟା ଆର କାଣା ହେବା ବୋ, କହେବୁ ବେଲେ ଲେବ ଟପ ଗୁଟେ ଦେଇ ଦେମି ଭରନା.. .. "

ଠୋ କରି ଶିବ ଗୁଟେ ଚଟକନ ପିଟି ଦେଲା ବିଜୟର ଫୁଲକୁ ଫୁଲକୁ ଗାଲେ.. .. ଚମକି ପଡଲେ ଶିବପ୍ରସାଦ, ହାତ ପିଟି ହେଇଛେ ପାଖର ଗୁଟେ ମୁଚଲାନେ ।

ବାହାରେ ଟିକେ ଟିକେ ଉକିଆ ହେଲାନ । କେତେ ସପନ କେତେ ସତ ବୁଝିନାଇ ପାରୁଥାଇ ଏଭେ ବି । ଜଲୁଥାଏ ଦୁଇ ଆଏଖ, ତାର ଠାନୁ ଅଧିକା ଜଲୁଥାଏ ମନ । ଶିବପ୍ରସାଦ ଘଡି ଦେଖଲେ, ପାଁଚ ପଁଦର । ଟ୍ରେନ ଅଛେ ସାତ ପାଁଚ ।

କେତେ ଧୁରେ ଟେସନ, ବାହାରବା କେ ପଡବା...



## ଜାନତକେ କେତେ, ଅଜାନତେ ସିନେ କାହିଁ କେତେ !

ଦିସୁଥିସି ସଥେଁ କେତେ ଜେ ? ଆଖିର ଉହାଡ଼େଁ ଇ ସାରା ପୁରଥି । ନଜେର ତ ଜାଇ ଜାଇ ଜିବା ଚକ୍ରବାଲ ପତେ, ଆଖି ମୁଜଲେଁ ଜେକ ନିଜର ନୁ ମୁକଲି ହେସି; ସାରା ଦୁନିଆର, ସବୁ ସମିଆର, ସବୁ ଠାନର, ସବୁ ମୁନସର ସହେତେଁ ସାମିଲ ହଇ ହେସି । ଦେଖାସୁନା, ଅଦେଖା ଅସୁନା, ଜନା ଅଜନା ଜାହା ବି କଥା ଘଟୁଛେ; ହେଦେ ହାଦେ ହେଲେଁ ଖବର ଆଏ, ଜୁନହା ପୁରନା ହେଲେଁ ଇତିହାସ । ତାକେ ମନକେ, ଭାବନାକେ, ସପନକେ ନେଇକରି ପାକ କଲେଁ, ସଜାଲେଁ, ଜତନାଲେଁ ଆର କଥାଥିଁ ଫୁଟାଲେଁ କି ଫୁଲଥିଁ, ସୁନୁଥା କି ଦେଖୁଥା ବାଗିର ଲାଗସି ।

କଥାନି ବାଗିର କଥାନି ମାନେ 'ହଜଲା କଥାନି' । ସନ୍ତୋଷ ରଥକଁର ବାରଟା କଥାନି । ହଜିଥିଲା ଜେ ନୁରି ଆନିଛନ ନହେ, ହଜିଜିବା ଭାଏଲ ବଲିଁ ଠକା ବେଲେଁ ସଁଖଲିଛନ କଥାନି ଗୁଛା । ସନ୍ତୋଷ ମାନେ ଜେନ ସମିଆ, ଲୋକ ଆର ଜେନଜେନ ଘଟନା ଦେଖିଛନ, ସୁନିଛନ, ଜାନିଛନ, ହେଜିଛନ ତାର ହେଜାଲେଖା ଇହାଛିନି ନାଇଁ କଲେଁ, କଥାର ପୁରାଥିଁ ନାଇଁ ବାନ୍ଧଲେଁ ଅଗମପତା ହଇଜିବା । ଜରୁରି ନିଜର ଭାବେଁ, ଅପନାର/ଦୁସରାର ଠାନ, ସମିଆ, ଆର ଲୁକର କଥା ମନକେ ଇହାଛିନି କହେବାର । ତେତକର ସିନେ ସେ କଥା ବି ଆମର ହେବା, ଅମର ହେବା ।

ଜେନମନେ ଦେଖିଛନ ଗାଁ ନେ ସକାଲୁଁ ସକାଲୁଁ ଚଟୁଥିଁ ଇ ଘରର ଚୁଇଲନୁ ଜୁଏ ଆନିକରି ଆରେ ଆରେ ଘରର ଚୁଇଲଥିଁ ପହଁଚାବାର, ତାକର ଲାଗିଁ ନିଏ ଖାଡ଼ିର ଅର୍ଥ ଜାହା, ସେଟା ଆଏବା ପିଢ଼ି ଲାଗିଁ ଗୁପ୍ୟ ହଇଜିବା । ତ 'ନାରଣ ତିହାଡ଼ିର ସପନ' କଥାନିଥିଁ ଇ ସପନର ଅର୍ଥ ନୁରା ହଇଛେ । ନିଏ ଖାଡ଼ି ପରେ ପାତିମାକର ମାନେ ଦେଲେ, ଜୁଏ ବେଟିଆଁ ଗଲା ଗଲା, ନିଏ ବି ପରେ ଗଲା । ନିଏ ପଂଚେତ କରି କରି ଆର ଜୁଏପାଏନ ବଏ କରବ କାଣା ! ସବୁ ଘରେଁ ନିଏ ଖାଡ଼ି । ଆରେ ସପନଥିଁ ରଜା ଭାଲୁମାନକୁଁ ଅକଲଥିଁ ଆଏତ କଲେ ପରେ । ହେଲେଁ ଇ ରାଜନିତିକ ସାମାଜିକ ପେଁଚ ଲାଗିଁ ରଜାର ମୁନୁସ ପନ ତ ଗଲା । ତାର ସହେତେଁ ସୁଖର ଝୁମରା ବି ।

ଜାହା ଦିସୁଛେ ସତ ବାଗିର ଲାଗୁଛେ ସିନେ, ଜାହା ସଥେଁ ସତ ତ କେନ ମନ କରପନେ ଲୁକିକରି ଅଛେ । 'ହଜି ଜାଇଥିବାର କଲମ'ଥିଁ ହେନ୍ତା ସତ ସପନ ଆଇଛେ । ସିବ ମାହାପୁରୁ ତ ସପନେ ଆଇଛନ, ମନର କଥାକେ ସତ ସତ ଲିଖିପାରିଥିବାର କଲମ ବାର ବାର ଆଇଛେ । ଜୁନ୍‌ହା ପୁରନା କଲମକେ ହେତେଇ ହେତେଇ କେତେ ଜୁଗୁଁ ଛଟିଁଥିଲା ରିସମି ବି ସପନେଁ ଆଇଛେ ।

ଇ କଥାନି ମାନକେ ଉପନିବେସବାଦର ଝଲକ ଦିସବା, ଗୁରାମାନେ ଆଇଛନ ଆମର ବାହିକେ, ଓଡ଼ିଆ କହୁଥିବାର ଲୋକ ଆସିଛନ ଗଁତିଆ ହେବାକେ । କଥାନିକାର ସିଧା ସଲଖ କେନସି ତରଫଦାରି ନାଇଁ କରିଁ । ପାଠକ ତାର ଭାବେଁ ମତାମତ ବନାବା । ଲାଲଟିନ କଥାନିଥିଁ ସାହେବ ବଦମିଜାଜି ବହଂଗେର, ହେଲେଁ ଚାଏର ଚଉକିଦାର.. କଥାନିଥିଁ ଆହା ବିଚରା ସାହେବ.. ଜିଇଁ ଥିଲା ବେଲେଁ କେତେ କେତେ ବୁଲଲା, ମଲା ବେଲେଁ ବି ତାକେ ଠାନ ନାଇଁ । ଆମର ଢ଼ବାଘର କଥାନିଥିଁ ରଜାର ବାଦଲ ମହଲ ବନା ହଇଛେ ବେଠି ବଗାରି, ଛଲ କପଟର ବଲେଁ । ଆମର ବାହିର ମରଡି, ପାଏନ ଲାଗିଁ ଗୁଲଗୁଲା ଆର ତାକେ ନେଇକରି ରାଜନିତିର ଚରଚା ବି ଇ କଥାନିଗୁଛାଥିଁ ।

ଜୁନହା କଥା । ନୁଆଁ କଥାନି ।

ଇ କଥାନିମାନକୁଁ କେନୁ ପାଏଲେ ସନ୍ତୋଷ ! ମିଚେଲଏଂଜେଲୋ କେନୁ ପାଉଥିଲେ ତାକର ମୁରତି ? Every block of stone has a statue inside it and it is the task of the sculptor to discover it. ପାଏବାର ଉପେ ରହେଲା ନଜେର ଉପରେଁ । ନେତ୍ରାନ ର ନଜେର ବଲେଁ ନୁଆଁ ସିରଜିନା । ଗୁରା ସାହେବ ମରିଗଲା ଚାଏର ଚଉକିଦାର...କଥାନିଥିଁ । ମରହା ବୁହିଥିବେ ନା କିଏ କିଏ ? ବାସ..କଥାନିଥିଁ ଚାଏରଟା ଚଉକିଦାରର କଥା ଆଏଲା । ସାହେବ ମଲା.. ଇତିହାସ ଏ । ଚଉକିଦାର ମାନକର କଥା ଲାଗିଁ ତ ଇତିହାସନ ଠାନ ନାଇଁ । ସାହିତ୍ୟ ସେମାନକୁ ଠାନ ଦେବା ମୁନସର ଦିଲ ଆର

ଦିମାଗଥିଁ । ସଥେଁ ସେମାନେ କେଭେଁ ଥିଲେ କି ନି କିଏ ଜାନେ, ହେଲେଁ ସେମାନେ ସତ ସତ ।

କଥାନି ଥିଁ ସବଦ ନେଇକରି ସୁ ର  ଖେଲ । କବିତାନୁ ବି ପରେ କଥାନି ସବଦର ପ୍ରେମ ଥିଁ ଜହ ପଡ଼ସି । ନିଏଖାଡ଼ି କଥା ଜେନ୍ତା । ଜମନାକେ ଜମୁନା କରା ହେଲା ବାଗିର । ମରନର କଥା ନୁ ପ୍ରେମ କଥା । କାଠ, କୁଟା, କାଠିକେ ନେଇକରି କଲାକୃତି ବନାଲା ରୁପକାର ନେତ୍ରାନ । ତାକେ ଖାଇଗଲେ ଉଇ । ଉଇ ବେଲେଁ ପରେ We, ଆମେ । କେତେ ଧୁରେଁ ଚାଲି ଚାଲି ଜ, ଡଂଗାନ ଜ, ରେଲେଁ ଜ, ମଟରେଁ ଜ.., ତେତକର କାଏଁ ଠାନ ଜେ ଅସମ ପରେ । କିଛି ସମ ନାଇଁ । ଚାହା ବାଗାନ ଭିତରେଁ ହଜିଜିବ । ନିଜର ଭାବେଁ ପାଠକ ଇ ନୁଆଁ କଥାନି ମାନକେ ପଢ଼ବେ ।

ପଢ଼ବାର ବଏସରା ଆମର ବାହିଥିଁ ଜହ ନାଇଁ । ଆମେ ସୁନସୁଁ ଜହ, ଦେଖସୁଁ ଜହ । ହଜଲା କଥାନି ଆମର ପାଠକମାନକୁଁ ବନେ ଲୁଭାବା । ଆରୁ ଆରୁ କଥାନିମାନକର ଲାଗିଁ ବାଟ ଦେଖାବା ।

**କେଶରଂଜନ ପଧାନ, ପଦମପୁର**





## ସଂତୋଷ କୁମାର୍ ରଥ

ଭାସା-ସାହିତ୍ୟର ଆଲୋଚନା କରସନ
ଆର ବି ଲେଖସନ କବିତା ଆର କଥାନି,
ସବୁଥି ଗୁଟେ ନୁଆଁଧାରା ଦେବାକେ



ହଜଲା କଥାନିମନକୁ ଖୁଜଲା ବେଲକେ,
ସେ କୁଁଦାବେଡାହେଇ ତରାପଟିଆନେ ଠିଆହେଇଥିବା
ଲୋକ, ଠାନ ଆର ଇତିହାସର କଥା କହିଛନ



ଇଥି ଅଛେ,
ବଲାଁଗିର ପାଟନାର ଗଲା ଦୁଇସ ବଛରର ଇତିହାସ



ଉଡିଆନେ ଲେଖଲା "ଅସ୍ୱୀକୃତ ପରଂପରା" ପଛେ,
ଆମର ଭାଷାର ବଢତି ଆଡକେ
ଇଟା ଆର ଗୁଟେ ପାହା ।






ଅନୁରାଗ ପ୍ରକାଶନ
ହିଲ୍ ଭିଉ, ପେଲେସ ଲାଇନ୍, ବଲାଙ୍ଗିର